# ଆଲୋକ ଗାଡ଼ି

ଲେଖକ :

ଡକ୍ଟର ଶ୍ରୀ ଘନଶ୍ୟାମ ସାମଲ

ପ୍ରକାଶକ :

ଜେ. ମହାପାତ୍ର ଏଣ୍ଡ କୋ.

ଛାତ୍ରସାଥୀ ଅଫିସ

ନିମଚଉଡ଼ି, କଟକ-୨

ମୂଲ୍ୟ ଟ ୪ ୦୦

# ସୂଚୀ



[ ଏହି ଲେଖାଗୁଡ଼ିକ ପୂର୍ବରୁ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । ]

# ଆଲୋକ ଗାଡ଼ି

ସାହିତ୍ୟିକ ବା ଗଳ୍ପ ଲେଖକମାନେ ଲାଇଟ୍ ଟ୍ରେନ୍‌ର ଓଡ଼ିଆ ପ୍ରତିଶବ୍ଦ ରୂପେ ଲେଖିଥାଆନ୍ତି ଲଘୁ ଗାଡ଼ି ବା ଲଘୁ ବାଷ୍ପୀୟଶକଟ । କିନ୍ତୁ ମୋ ମତରେ ଏହାର ପ୍ରକୃତ ପ୍ରତିଶବ୍ଦ ଆଲୋକ-ଗାଡ଼ି । ପୁତ୍ର ଅନ୍ଧ ହେଲେ ମଧ୍ୟ ସ୍ନେହମୟୀ ଜନନୀ ତାର ନାମ ରଖେ ପଦ୍ମଲୋଚନ । ଛୋଟା କେମା ହେଲେ ମଧ୍ୟ ତାର ନାମ ଦିଏ କନ୍ଦର୍ପ । ଏହିପରି ଅର୍ଥରେ ଲାଇଟ୍ ଟ୍ରେନର ଓଡ଼ିଆ ନାମ ଆଲୋକ-ଗାଡ଼ି । ଯେଉଁ ଗାଡ଼ି ଆଲୋକର ବେଗରେ ଗତି କରେ, ସେ ହେଉଛି ଆଲୋକ-ଗାଡ଼ି । ମନେ ରଖିବାକୁ ହେବ ଯେ, ଆଲୋକ ପ୍ରତି ସେକେଣ୍ଡରେ ୧୮୬, ୦୦୦, ମାଇଲ ଗତି କରେ । ଏଇ ଆଲୋକ-ଗାଡ଼ିର ଅଭିଜ୍ଞତା ନେଇ ମୁଁ ଏଠି ପଦେ ଅଧେ କହିବି ।

ପାରଳାରେ ଦୁଇ ମାସ ଅବସ୍ଥାନ । ତାପରେ ଗ୍ରୀଷ୍ମଛୁଟିରେ କଲେଜ ବନ୍ଦ ହେବାମାତ୍ରେ କଟକ ଛୁଟିଲି । ଏ ଦୁଇ ମାସ ମଧ୍ୟରେ ଆଲୋକ-ଗାଡ଼ିରେ ଯିବାର ମୋତେ କେବେ ସୁଯୋଗ ମିଳି ନ ଥିଲା । ଏ ବହୁଦର୍ଶିତା ମହାର୍ଘ ହେଲେହେଁ ମୁଁ ଆକାଙ୍‌କ୍ଷୀ ଥିଲି—କେବଳ ଅଭିଜ୍ଞତା ଅର୍ଜନ ପାଇଁ । ଗ୍ରୀଷ୍ମ ଅବକାଶ ପରେ କଲେଜ ଖୋଲିବାକୁ ଆଉ ଦିନେ ଅଛି । ଜୁନ ସତେଇଶ ତାରିଖ, ଜନତାରୁ ଓହ୍ଲାଇ ନଉପଡ଼ା ଷ୍ଟେସନରେ ଆଲୋକ ଗାଡ଼ି ଧରିଲି । ଜନତା ପଇଞ୍ଚାଳିଶ ମିନିଟ୍ ବିଳମ୍ବରେ ପହଞ୍ଚିଥିଲା । ତେଣୁ ଆଲୋକ ଗାଡ଼ି ଯେ ଆମପାଇଁ ଅପେକ୍ଷା କରି ରହିଥିବ ସେ ବିଷୟରେ ମୁଁ ସନ୍ଦିହାନ ଥିଲି । ସୌଭାଗ୍ୟବଶତଃ ଆମେ ଗାଡ଼ିରୁ ଓହ୍ଲାଇବା ବେଳକୁ ଆଲୋକ ଗାଡ଼ି ଯେପରି ଆମ ପ୍ରତୀକ୍ଷାରେ ରହିଥିଲା । ଗାଡ଼ି ତିନିଟା ପଇଁଚାଳିଶରେ ଛାଡ଼ିବାର କଥା ; କିନ୍ତୁ ଛାଡୁ ଛାଡୁ ପ୍ରାୟ ସାଢେ ଚାରିଟା ବାଜି ଯାଇଥିଲା ।

ଗାଡ଼ିରେ ଦୁଇଟି ମଧ୍ୟମ ଶ୍ରେଣୀ ଡବା । ଡବାଗୁଡ଼ିକର କବାଟ ବାହାର ପାଖକୁ ରହିଛି । ଭିତରେ ଯାତ୍ରୀମାନଙ୍କର ବସିବାପାଇଁ ଅଧଇଞ୍ଚ ବହଳର ଗଦି ବେଞ୍ଚ ଉପରେ ପଡ଼ିଛି । ଗଦି ଭିତର ନଡ଼ିଆ-କତା ବାହାରକୁ ଦିଶୁଛି । ଛାତରେ ଗୋଟିଏ ଖୋପ ଦେଖିଲି । ଶୁଣିଲି ସେ ଖୋପରେ ପୂର୍ବେ ଜଡ଼ାତେଲ ବତି ଜଳୁଥିଲା । ମୋ ସାଙ୍ଗରେ ମୋର ଜଣେ ବନ୍ଧୁ ଓ ଜଣେ ଛାତ୍ର ଥିଲେ । ଆମେ ଯେଉଁ ଡବାରେ ବସିଥିଲୁ, ସେଥିରେ ପ୍ରାୟ ଚାରିଜଣ ତେଲଙ୍ଗୀ ଭଦ୍ରଲୋକ ଓ ପାଞ୍ଚ ଜଣ ତେଲଙ୍ଗୀ ଯୁବତୀ ଥିଲେ । ଆମ ପାଖକୁ ଲାଗି ଯେଉଁ ଭଦ୍ରଲୋକ ଜଣକ ବସିଥିଲେ ତାଙ୍କର ପରିଧାନ ମଧ୍ୟରେ ଧୋତି ପଞ୍ଜାବି, କପାଳରେ ଚିତା ଚନ୍ଦନ ତାଙ୍କର ପୃଥୁଳ ବପୁକୁ ବେଶ୍ ମାନୁଥାଏ । ତାଙ୍କର ମୁଖ ଗମ୍ଭୀର ହେଲେହେଁ ସେ ସାଥୀ ଯାତ୍ରୀମାନଙ୍କ ସହିତ ତେଲଙ୍ଗୀ ଓ ଇଂରାଜୀ ମିଶ୍ରିତ ଭାଷାରେ ଅନର୍ଗଳ ଗପି ଚାଲିଥାନ୍ତି ।

ଯୁବତୀମାନେ ପ୍ରାୟ ସମସ୍ତେ ସାଟିନ୍ ବ୍ଲାଉଜ ପିନ୍ଧି ଥାଆନ୍ତି । ପଶ୍ଚାତ୍-ଭାଗରେ ଲମ୍ବିତ ବେଣୀ ଦୁଇଟି ଶ୍ୱେତ, ରକ୍ତ ବର୍ଣ୍ଣର ପୁଷ୍ପଦ୍ୱାରା ଭୂଷିତ ହୋଇଥାଏ । ଦକ୍ଷିଣାଞ୍ଚଳର ଯୁବତୀମାନଙ୍କର ଏ ହେଉଛି ଗୋଟିଏ ବିଶେଷତ୍ୱ । ସଭା ସମିତି, ସ୍କୁଲ କଲେଜ, ସିନେମା ଯୁଆଡେ ଯାଉନ୍ତୁ, ସେମାନେ ମସ୍ତକକୁ ଫୁଲରେ ନ ସଜାଇ ବାହାରିବେ ନାହିଁ । ମୋର ମନେ ପଡ଼ିଲା, ପାରଳାରେ ମୋ ବସା ଆଗରେ ମୁଁ ଗୋଟିଏ ଗୋଲାପ ଗଛ ରୋପିଥିଲି । ମୋର ପଡ଼ୋଶୀ ଘରେ ଗୋଟିଏ ନଅ ଦଶ ବର୍ଷିଆ ବାଳିକା ଥାଏ । ଠିକ୍ ଗୋଟିଏ ଫୁଲ ଫୁଟିବାମାତ୍ରେ ସେ ସେଦିନ ଆସି ଫୁଲଟିକୁ ତୋଳିନେବା ପାଇଁ ମୋର ଅନୁମତି ଚାହେଁ । ଗୋଲାପ ବୃନ୍ତରେ ପୁଷ୍ପଟି କେଡେ ସୁନ୍ଦର ଦିଶୁଛି । ପୁଷ୍ପଟିକୁ ଛିଣ୍ଡାଇ-ଦେବାକୁ ଇଚ୍ଛା ହୁଏ ନା, ହୁଏତ କିଛିଦିନ ପରେ ଏଇମିତି ଗୋଟି ଗୋଟି ହୋଇ କେତେ ଫୁଲ ଫୁଟି ମୋର ଉଦ୍ୟାନକୁ ମଣ୍ଡନ କରିବ, ଛିଡ଼ାଇ ପକାଇଲେ ଯେ ଅଳ୍ପକାଳ ପରେ ମଉଳି ପଡ଼ିବ; କିନ୍ତୁ ବାଳିକାଟି ଯେଉଁପରି ଉଦ୍‌ବେଗ ସହକାରେ ମୋତେ ଫୁଲଟିକୁ ମାଗେ ସେଥିରେ ତାର ଅନୁରୋଧକୁ ଏଡ଼ିଦେବାପାଇଁ ମୋର ମନ ହୁଏନା । ହୁଏତ ଫୁଲଟିକୁ ପାଇଲେ ସେ ଯେଉଁ ଆନନ୍ଦ ପାଇବ, ଫୁଲଟିର ସୌନ୍ଦର୍ଯ୍ୟ ଉପଭୋଗ କରି ମୁଁ ପାଇବା ଆନନ୍ଦଠାରୁ ଯଥେଷ୍ଟ ବେଶୀ । ଏଇମିତି ଯେତେ ଫୁଲ ହୁଏ ବାଳିକାଟି ସଙ୍ଗେ ସଙ୍ଗେ ଆସି ଛିଡ଼ାଇ ନିଏ । ମୁଁ ମୋର ଉଦ୍ୟାନରେ ତା ପରେ ପ୍ରସ୍ଫୁଟିତ ପୁଷ୍ପ ବେଶୀ ସମୟ ପାଇଁ ଦେଖିବାକୁ ପାଇନାହିଁ । କଳିକା ପ୍ରସ୍ଫୁଟିତ ହେବାକୁ ଯେତେ ସମୟ ଲାଗେ, ସେତିକି ସମୟ ମୁଁ ଗୋଲାପଟିକୁ ଦେଖିବାକୁ ପାଏ ।

ଗାଡ଼ି ଚାଲିଲା । ଭିତରେ ବସି ଆମ୍ଭେମାନେ ପାହାଡ଼ଘେରା ପ୍ରକୃତିକୁ ଚାହିଁ ରହିଥାଉ । ରାସ୍ତା ଦି ପାଖରେ ମାଳ ମାଳ ଶିରୀଷ ବୃକ୍ଷ । ତାର ଭିତର ଦେଇ ଗାଡ଼ି ସିଟି ବଜାଇ ଚାଲିଥାଏ । ଗାଡ଼ି କେତେ ମାଇଲ ବେଗରେ ଯାଉଥିଲା, ତା ମୁଁ କହି ପାରିବି ନାହିଁ । କିନ୍ତୁ କେତେ ଲୋକ ସାଇକେଲ ଚଢ଼ି ଆମକୁ ଟପି ଚାଲି ଯାଉଥିବାର ମୁଁ ଦେଖିଲି । ସବୁଠୁ ଆଶ୍ଚର୍ଯ୍ୟ ଲାଗିଲା ଯେତେବେଳେ ଗୋଟିଏ ଗାଡ଼ିକୁ ମଇଁଷିମାନେ ଟାଣିନେଇ ଆମ ଆଗକୁ ଚାଲିଗଲେ । ଗାଡ଼ିବାଲା କଟୁରିରେ ଗୋଟିଏ ବାଇଗଣପଲ୍ଲୀ ଆମ୍ବ କାଟି ଖାଇ ଖାଇ ଗାଡ଼ି ପଛେ ପଛେ ଯାଉଥାଏ ।

ଆମେ ସେତେବେଳେ ବୁଝି ପାରିଲୁ ନାହିଁ, ଗାଡ଼ି ଏମିତି ବେଗରେ ପାରଳାଖେମୁଣ୍ଡି ଯାଏ ଯିବ କି ନାହିଁ ।

କିଛିଦୂର ପରେ ଗୋଟିଏ ଉଠାଣି ପଡ଼ିଲା । ଗାଡ଼ି ଯେମିତି ଉଠାଣି ଉପରକୁ ଉଠିଛି ଆଉ ସିଧା ଆଗକୁ ଯାଇ ନପାରେ । ଆଗକୁ ଯାଉଥାଏ, ପୁଣି ପଛକୁ ଫେରି ଆସୁଥାଏ । ଆମେ ଗାଡ଼ି ଭିତରେ ବସି ଆଗ ପଛ ହଲିବାକୁ ଲାଗିଲୁ । ଏମିତି ଯାଇ ଯାଇ ନଉପଡ଼ାର ପରବର୍ତ୍ତୀ ଷ୍ଟେସନ ଟେକିଲିର ପ୍ଲାଟଫର୍ମ ଏ ପାଖରେ ଗାଡ଼ି ଅଟକିଗଲା । ନଉପଡ଼ାରୁ ଟେକିଲି ପାଞ୍ଚ ମାଇଲ ଦୂର । ଏଇ ପାଞ୍ଚ ମାଇଲ ଯିବାକୁ ଗାଡ଼ିକୁ ପ୍ରାୟ ୪୫ ମିନିଟ ଲାଗିଥିଲା ।

ଗାଡ଼ି ପ୍ଲାଟଫର୍ମର ଏ ପାଖରେ ପଡ଼ି ରହିଲା ଅନେକ ସମୟ ପର୍ଯ୍ୟନ୍ତ । ଘଟଣା କଅଣ ବୁଝିବାକୁ ବାହାରକୁ ଆସିଲୁ । ଜଣେ ଲୋକ କହିଲା, ହନୁମାନ ଫେଲ୍ କଲା, ଡ୍ରାଇଭର କହୁଛି, ଗାଡ଼ି ଆଉ ଆଗକୁ ଯାଇ ପାରିବ ନାହିଁ । ଲୋକଟିର କଥା ମୁଁ ପହିଲୁ ବୁଝି ପାରିଲି ନାହିଁ । ଏ ହନୁମାନ କିଏ ସେ । ସେ ପୁଣି କି ପରୀକ୍ଷା ଦେଇଥିଲା । ସେ ଫେଲ୍ କଲା ବୋଲି ଆମ ଗାଡ଼ି ବା ଆଗକୁ ଯିବ ନାହିଁ କାହିଁକି ? ମୋର ଜଣେ ସହଯାତ୍ରୀଙ୍କୁ ପଚାରିଲି । ସେ କହିଲେ ଯେ, ଗାଡ଼ି ଇଞ୍ଜିନର ନାମ 'ହନୁମାନ' । ଆହୁରି ଗୋଟିଏ ଇଞ୍ଜିନ ଅଛି । ତାର ନାମ 'ପର୍ଶୁରାମ' । ପର୍ଶୁରାମ ହନୁମାନଠାରୁ କୁଆଡେ ଟାଣୁଆ ।

ଗାଡ଼ି ଆଉ ପ୍ଲାଟଫର୍ମ ଉପରକୁ ଯିବ ନାହିଁ ଦେଖି ଆମ ଡବାରେ ବସିଥିବା ତେଲଙ୍ଗୀ ଯୁବକ ଯୁବତୀମାନେ ସେଇଠୁ ଗାଡ଼ିରୁ ଓହ୍ଲାଇ ଟେକିଲିରେ ସିନେମା ଦେଖିବାକୁ ଚାଲିଲେ ।

ଏମିତି ସେଠି ଗାଡ଼ି ପ୍ରାୟ ଅଧଘଣ୍ଟାଏ ରହିଲା । ହଠାତ୍ ଦେଖିଲୁ ଗାଡ଼ି ପଛକୁ ଚାଲୁଛି । ସତକୁ ସତ ଗାଡ଼ି ପୁଣି ନଉପଡ଼ାକୁ ଫେରିଲା । ଟେକିଲିରୁ ନଉପଡ଼ାକୁ ଗଡ଼ାଣି ରାସ୍ତା ଥିବାରୁ ହନୁମାନକୁ ବିଶେଷ କଷ୍ଟ ସହିବାକୁ ପଡ଼ିଲା ନାହିଁ । ଖୁବ୍ ଶୀଘ୍ର ଗାଡ଼ି ନଉପଡ଼ାକୁ ଫେରି ଆସିଲା ।

ନଉପଡ଼ା ଷ୍ଟେସନ ମାଷ୍ଟରଙ୍କ ପାଖକୁ ଯାଇ ଆମେ ଅଭିଯୋଗ କଲୁ, ଗାଡ଼ି କାହିଁକି ଫେରି ଆସିଲା, ଆମେ କିପରି ପାରଳାଖେମୁଣ୍ଡି ଯିବୁ । ଷ୍ଟେସନ ମାଷ୍ଟର କହିଲେ, "ଆପଣଙ୍କର ସୌଭାଗ୍ୟ ଯେ ଗାଡ଼ି ନଉପଡ଼ାକୁ ପୁଣି ଫେରି ଆସିଛି । ଗାଙ୍ଗୁଆଡ଼ା ସେପାଖରେ ଯେଉଁ ଜଙ୍ଗଲ ଅଛି, ସେଠି ଯଦି ହନୁମାନ ଫେଲ କରିଥାଆନ୍ତା, ତାହାହେଲେ ଆପଣଙ୍କର ଅବସ୍ଥା କଅଣ ହୋଇ ଥାଆନ୍ତା, କଳ୍ପନା କରନ୍ତୁ ତ ।"

ଗାଡ଼ି ଖୁବ୍ ନିକଟରେ ନଉପଡ଼ା ଛାଡ଼ିବ ବୋଲି ଆଶା ନାହିଁ ବୋଲି ଶୁଣିଲୁ । କିନ୍ତୁ ଷ୍ଟେସନ ମାଷ୍ଟର ଆଶ୍ୱାସ ବାଣୀ ଶୁଣାଉଥାନ୍ତି ଯେ ପ୍ରାୟ ଏକ ଘଣ୍ଟା ପରେ ଗାଡ଼ି ପୁଣି ଠିକ୍ ହୋଇଯିବ । ଆଗରୁ ଅବଶ୍ୟ ଥରେ ଆଲୋକ-ଗାଡ଼ିର ଅଭିଜ୍ଞତା ଥିଲା । ଛାତ୍ର ଜୀବନରେ ଥରେ ଭକ୍ତିଆରପୁରରୁ ଦେବଗିରିଯାଏ ଆଲୋକ-ଗାଡ଼ିରେ ଯାଇଥିଲି । ଦେବଗିରିଠାରୁ ତିନି ମାଇଲ ଦୂରରେ ଅବସ୍ଥିତ ନାଲନ୍ଦା ଦେଖିବା ଆମର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଅନ୍ୟାନ୍ୟ ଆକର୍ଷଣ ମଧ୍ୟରେ ଦେବଗିରିର ଉଷ୍ଣ ପ୍ରସ୍ରବଣ, ପାହାଡ଼ ଉପରିସ୍ଥ ପୁରାତନ ଗୁମ୍ଫାବଳୀ ଓ ପ୍ରସ୍ତର ମୂର୍ତ୍ତିମାନ ପ୍ରଧାନତମ ।

ରୁପସାରୁ ବାରିପଦା ଯାଏ ମଧ୍ୟ ଏମିତି ଏକ ରେଲପଥ ଅଛି । ଶୁଣିଛି, ଗାଡ଼ି ଯାଉ ଯାଉ ଗାଡ଼ିଚାଳକ ରାସ୍ତା ମଧ୍ୟରେ ହଠାତ୍ ଗାଡ଼ି ବନ୍ଦ କରିଦେଇ ରାସ୍ତା ପାର୍ଶ୍ୱସ୍ଥ ପୁଷ୍କରିଣୀ ବା ପାଟ ମଧ୍ୟରୁ ଧରାଯାଉଥିବା ମାଛ କିଣେ । କିନ୍ତୁ ଗାଡ଼ି ଗୋଟାଏ ଷ୍ଟେସନରେ ପହଞ୍ଚି ପୁଣି ଫେରି ଆସିବା ବିଷୟ କାହାରିଠାରୁ ଶୁଣି ନାହିଁ ।

ଶୁଣିଲି, ଏ ହେଉଛି ଦେଶୀ ଇଞ୍ଜିନର ଗୁଣ । ହନୁମାନ, ପର୍ଶୁରାମ କୁଆଡେ ଖଡ଼ଗପୁର କାରଖାନାରେ ନିର୍ମିତ । ନିଜ ଦେଶରେ

ତିଆରି ହୋଇଥିବାରୁ ଏମାନଙ୍କର ନାମ ମଧ୍ୟ ଏପରି ରଖାଯାଇଛି । ବରିପଦା ରେଳପଥରେ ଯାଉଥିବା ଇଞ୍ଜିନର ନାମ ସେହିପରି ଜଗନ୍ନାଥ ଓ ବଳଭଦ୍ର । ଏଇ ଖଡ଼ଗପୁର ତିଆରି ଇଞ୍ଜିନଗୁଡ଼ିକ ପରୀକ୍ଷିତ ହେବାପାଇଁ ଏହି ରେଳପଥମାନ ଉପଯୁକ୍ତ ସ୍ଥଳ ।

ନଉପଡ଼ାକୁ ଫେରି ଆସିବାବେଳକୁ ଦିନ ପ୍ରାୟ ସରି ଆସିଥିଲା । ଦିନଯାକ ବେଳରେ ଯାତ୍ରାକରି ସେତେବେଳେ ଆମେ ହାଲିଆ ହୋଇ ପଡ଼ିଲୁ । ପିଇବା ପାଣି ଖୋଜିବା ପାଇଁ ଷ୍ଟେସନରେ ଏପାଖ ସେପାଖ ବୁଲିଲୁ । ପାଣି କେଉଁଠାରେ ମିଳିବ ବୋଲି ଜଣେ ଲୋକକୁ ପଚାରି-ବାରୁ ସେ କହିଲା, "ବାବୁ, ଏଠାରେ ପାଣି ଭାରି ମହଙ୍ଗା । ଆପଣ ସେ ଦୋକାନରେ ଜଳଖିଆ ଖାଇଲେ ଯାଇ ପାଣି ମିଳିବ ।" ଶେଷକୁ ଜଳଖିଆ କିଣିଲୁ; କିନ୍ତୁ ଖାଇ ପାରିଲୁ ନାହିଁ । ପାଣିତକ ପିଇଲୁ ମାତ୍ର ।

ଏହିପରି ପ୍ରାୟ ଦେଢ଼ ଘଣ୍ଟା ପରେ ଗାଡ଼ି ପୁଣି ଛାଡ଼ିଲା । ଏଥର ହନୁମାନ ଆଗରୁ ଟିକିଏ ଅଧିକ ବେଗରେ ଚାଲିଲା । କ୍ରମେ ଟେକିଲି ପାର ହୋଇ ପାଦାସନ ଷ୍ଟେସନରେ ପହଞ୍ଚିଲା । ସେଠାରେ ଗାଡ଼ି ପ୍ରାୟ ଏକ ଘଣ୍ଟା କାଳ ପଡ଼ି ରହିଲା । ଆମ୍ଭେମାନେ ଟିକିଏ ବାହାରକୁ ବୁଲିବାକୁ ଆସିଲୁ । ଆକାଶ ସେତେବେଳେ ବେଶ ପରିଷ୍କାର ଦେଖା-ଯାଉଥାଏ । ଉତ୍ତରାକାଶରେ ସପ୍ତର୍ଷିମଣ୍ଡଳ, ପଶ୍ଚିମାକାଶରେ ବୃହସ୍ପତି ଓ ପୂର୍ବାକାଶରେ ମଙ୍ଗଳଗ୍ରହ ସ୍ୱ ସ୍ୱ ଦୀପ୍ତି ବିତରଣ କରୁଥାଆନ୍ତି । ଚନ୍ଦ୍ର ଆକାଶରେ ଦେଖା ଯାଇ ନ ଥାଏ । ରଜନୀର ତାମସୀ ବକ୍ଷରୁ ନିକଟସ୍ଥ ପାହାଡ଼ ଶୃଙ୍ଗମାନଙ୍କର ଉତ୍ତୋଳିତ ମସ୍ତକ ସ୍ପଷ୍ଟ ବାରି ହେଉଥାଏ । ରେଳ ରାସ୍ତାର ଅଦୂରସ୍ଥ ଦୋକାନମାନଙ୍କରେ ଦୀପ ମିଞ୍ଜି ମିଞ୍ଜି କରୁଥାଏ ।

ଗାଡ଼ି ସେଠାରେ ଅନେକ ସମୟ ରହିବ ବୋଲି ଜାଣି ସେ ଦୋକାନ ଆଡ଼େ ବୁଲି ବାହାରିଲୁ । ସେଠାର ଅଧିକାଂଶ ଦୋକାନୀ ଓଡ଼ିଆ ଭାଷା ଜାଣି ନାହାନ୍ତି । ସେମାନେ ଆମ ସହିତ ତେଲୁଗୁରେ କଥାବାର୍ତ୍ତା କରିବାକୁ ଆରମ୍ଭ କଲେ ; ମୋର ବନ୍ଧୁ ଜଣକ ସେତେ-ବେଳକୁ ଚାରି ବର୍ଷ ଦକ୍ଷିଣରେ କଟାଇ ସାରିଥିଲେ । କିନ୍ତୁ ତେଲୁଗୁ ଭାଷା ଶିଖିବାକୁ ସୁଯୋଗ ପାଇଛନ୍ତି କ୍ୱଚିତ୍ । ତେଣୁ ଅକଟି, ରେଣ୍ଡୁ, ମୁଡୁ (ଅର୍ଥାତ୍ ଏକ ଦୁଇ ତିନି) ବ୍ୟତୀତ ଆଉ ପ୍ରାୟ କିଛି ଜାଣି ନ ଥିଲେ । ଗୋଟିଏ ଦୋକାନକୁ ପଶି ଛଅଖଣ୍ଡି ପାନ ଭାଙ୍ଗିବାକୁ ଇଙ୍ଗିତରେ କହିଲୁ । ଲୋକଟି ପାନ ଭାଙ୍ଗିଲା, କିନ୍ତୁ ଛଅଖଣ୍ଡିକୁ ଏକ ସଙ୍ଗରେ ନ ଭାଙ୍ଗି ଗୋଟି ଗୋଟି କରି ଆମକୁ ଦେଉଥାଏ । ଗୋଟିଏ ପାନ ଭାଙ୍ଗି ଆମ ହାତକୁ ଦେଇ ସାରିବା ପରେ ଆଉ ଗୋଟିଏ ପାନ ପତ୍ର ତଳେ ରଖି ଭାଙ୍ଗିବାକୁ ଆରମ୍ଭ କରୁଥାଏ । ଏପରି କରିବାକୁ ଖୁବ୍ ବେଶୀ ସମୟ ଲାଗିଲେ ମଧ୍ୟ ସେଠରେ କାହିଁକି ଏପରି କରନ୍ତି ମୁଁ ବୁଝିପାରିଲି ନାହିଁ । ମୁଁ ଓଡ଼ିଆରେ ପଚାରିଲି, "ଗୋଟି ଗୋଟି କରି କାହିଁକି ଭାଙ୍ଗୁଛ ?" ଲୋକଟି ବୋଧହୁଏ ମୋ ଭାଷା ବୁଝି ନ ପାରି ମୋ ଆଡ଼କୁ ଚାହିଁଲା । ମୋର ବନ୍ଧୁ ତାର ଭାବ ବୁଝିପାରି ତାକୁ କହିଲେ, "ଅକଟି ଅକଟି କେୟା ?" ବନ୍ଧୁ ଭାବିଥିଲେ ଯେ ସେ ତାଙ୍କର ଭାବକୁ ତେଲୁଗୁରେ ଠିକ୍ ଭାବେ ପ୍ରକାଶ କରିଛନ୍ତି । କିନ୍ତୁ ସେ ଜାଣିପାରି ନ ଥିଲେ ଯେ ତାଙ୍କର ଅଜାଣତରେ ସେ ହିନ୍ଦି ଶବ୍ଦଟିଏ ବ୍ୟବହାର କରି

ପକାଉଛନ୍ତି । ଲୋକଟି ବୁଝିଲା କି ନାହିଁ କେଜାଣି ସେ ତାର ଉତ୍ତରରେ ଯାହା କହିଲା ଆମେ ତାହା ବୁଝି ପାରିଲୁ ନାହିଁ । ମୋର ମନେ ପଡ଼ିଲା, ଉତ୍ତର-ଭାରତ ପରିଭ୍ରମଣ କରିଯିବା ସମୟରେ ଠିକ୍ ଏଭଳି ଏକ ଘଟଣା ଘଟିଥିଲା । ବନାରସ୍ ଏକ୍‌ସପ୍ରେସରେ ଯାଉ ଯାଉ ମଝିରେ ଗୋଟିଏ ଷ୍ଟେସନରେ ଜଣେ ବଙ୍ଗାଳୀ ଯୁବକ ଗାଡ଼ିକୁ ଉଠିଲେ । ଗାଡ଼ିରେ ଭାରି ଭିଡ ଥିବାରୁ ଆମେ ତାଙ୍କୁ ଭିତରକୁ ଛାଡ଼ିବାକୁ ଖୁସି ହେଲୁ ନାହିଁ । ସେ ଆମକୁ ଭାରି କାକୁତି ହୋଇ କହିଲେ, "ଭାଇ, ହାମ୍‌କୋ ଏକ ଇଞ୍ଚ ଦୋ ଇଞ୍ଚ ଜାଗା ଛୋଡ ଦୋ ନା, ହମ୍ ଦଣ୍ଡା ଦଣ୍ଡା ଚଲ ଯାଏଁଗେ ।"

ଘଣ୍ଟାକ ପରେ ଗାଡ଼ି ପାଦସନ ଛାଡ଼ିଲା । ଟେମ୍ବୁରୁ, ଗାଙ୍ଗୁଆଡା, ପାଥ ପାଟନମ୍ ହୋଇ ଶେଷକୁ ରାତି ଏଗାରଟାବେଳେ ପାରଳା-ଖେମୁଣ୍ଡିରେ ପହଞ୍ଚିଲା । ଯେଉଁ ଗାଡ଼ି ଛଅଟା ପଞ୍ଚିରିଶରେ ପହଞ୍ଚିବାର କଥା, ସେ ୧୧ଟା ବେଳେ ପହଞ୍ଚିଲା ।

ଆଲୋକଗାଡ଼ିରେ ମୋର ଏ ଅଭିଜ୍ଞତା ପ୍ରଥମ ନ ହେଲେ ମଧ୍ୟ ଅଭିନବ । ପାରଳାର ମହେନ୍ଦ୍ରତନୟା କବି, ଲେଖକମାନଙ୍କର ମନରେ ଛାପ ରଖି ଯାଇଛି । କିନ୍ତୁ ସେ କ୍ଷୀଣଧାର ତରଙ୍ଗିଣୀ ମୋ ସ୍ମୃତିରେ ନିଷ୍ପ୍ରଭ ହୋଇ ରହିବ । କେବଳ ମହେନ୍ଦ୍ରତନୟା'ର ଉପରେ ନିର୍ମିତ ପୋଲର ପୁରାତନପଣି ମୋତେ ବାରମ୍ବାର ଆକର୍ଷଣ କରେ । ଯେଉଁ କାପ୍‌ଟେନ କାମ୍‌ବେଲ୍ ୧୮୪୯ ଖ୍ରୀଷ୍ଟାବ୍ଦରେ ତାକୁ ତିଆରି କରିଥିଲେ, ତାହା ଆଜି ଯେପରି ସେପରି ରହି ଓଡ଼ିଶାର ଓ ଆନ୍ଧ୍ରର ସୀମା ନିର୍ଦ୍ଦେଶ କରୁଛି । କିନ୍ତୁ ଆଲୋକଗାଡ଼ିର ଏ ଅଭିଜ୍ଞତା ମୋ ସ୍ମୃତିରେ ଚିରନ୍ତନ ହୋଇ ରହିବ ।

x x x x

ଲାଇଟ ଟ୍ରେନ୍ (Light Train)ର ଓଡ଼ିଆ ପ୍ରତିଶବ୍ଦ ରୂପେ ମୁଁ 'ଆଲୋକଗାଡ଼ି' ବ୍ୟବହାର କରେ । କାରଣ ଏହି ଗାଡ଼ି ଆଲୋକର ବେଗରେ ଯାଏ ଓ ରାତି ଘଡ଼ିଏ ଦିଘଡ଼ି ପର୍ଯ୍ୟନ୍ତ ଗାଡ଼ି ଭିତର ଅନ୍ଧାର ହୋଇ ରହିଥାଏ ।

ଆଗର ଆଲୋକ ଗାଡ଼ି, ଆଜିର ଆଲୋକ ଗାଡ଼ି ଭିତରେ ଅନେକ ତଫାତ୍ । ଗାଡ଼ିର ଡବାଗୁଡ଼ିକରେ ବାର୍ଣ୍ଣିସ୍ ଦିଆହୋଇ ବାହାରକୁ ବେଶ୍ ସୁନ୍ଦର ଦିଶୁଛି । ତୃତୀୟ ଶ୍ରେଣୀ ଡବା ଭିତରକୁ ଯଦି ଆପଣ ଜିନିଷପତ୍ର ନେଇ ପଶିଯିବେ ତେବେ ଭିତରଟା ଚକ୍ ଚକ୍ ହୋଇ ଉଜ୍ଜ୍ୱଳ ଦେଖାଯିବ । ପହିଲୁ ଆପଣ ଜିନିଷପତ୍ର ରଖିବା ପାଇଁ ଚାରିଆଡେ ଉପରକୁ ଅନାଇବେ ; କିନ୍ତୁ ଜାଗା କେଉଁଠି ପାଇବେ ନାହିଁ । ବସିବା ବେଞ୍ଚ ଉପରେ କିମ୍ବା ବେଞ୍ଚ ତଳେ ହେଉ ବାକ୍ସ ଓ ବିଛଣାପତ୍ର ରଖିବାକୁ ବାଧ୍ୟ ହେବେ । ଦ୍ୱିତୀୟ ଶ୍ରେଣୀ ଡବା-ଗୁଡ଼ିକରେ ଅବଶ୍ୟ ଏ ଅସୁବିଧା ହୁଏ ନାହିଁ । ତୃତୀୟ ଶ୍ରେଣୀରେ ଯେଉଁମାନେ ଯାତ୍ରା କରନ୍ତି, ସେମାନଙ୍କର ବୋଧହୁଏ କୌଣସି ଜିନିଷପତ୍ର ଥିବାର ଆଶା କରଯାଏ ନାହିଁ । ସେଥିପାଇଁ ଜିନିଷପତ୍ର ରଖିବାର କୌଣସି ଜାଗାର ବନ୍ଦୋବସ୍ତ ନାହିଁ । ବର୍ଷାଦିନ । ଆପଣ

ଯଦି ଗ୍ଲାସ୍ ହୋଇଥିବେ, ତାହାହେଲେ ପାଇଖାନା ପାଖରେ ବସିବେ । ନଚେତ୍ ବର୍ଷାରେ ତିନ୍ତିଗଲେ କମ୍ପାନୀ ଦାୟୀ ହେବେ ନାହିଁ । ବର୍ଷା ଯେତେ ହେଲେ ବି ପାଇଖାନା କୋଠରୀର କାନ୍ଥରେ ବାଜିବ ସିନା, ଆପଣଙ୍କଠାରେ ଟୋପାଏ ବି ପଡ଼ିବ ନାହିଁ ।

ସେଇ ହନୁମାନ, ପଶୁରାମ, କୁବେର ଏବେ ବି ଗାଡ଼ିକୁ ଟାଣୁଛନ୍ତି । ଉଭୟ ପାର୍ଶ୍ୱରେ ଶସ୍ୟ କେଦାରଗୁଡ଼ିକର ହରିତାଭମାନ ମାଧୁରୀ ଯାତ୍ରୀର କ୍ଳାନ୍ତି ଅପନୋଦନ କରେ । ସବୁଜ ଧାନ୍ୟକ୍ଷେତ୍ର ଉପରେ ମନ୍ଦ ମନ୍ଦ ବାୟୁ ପ୍ରବାହିତ ହୋଇ ବୀଚି ବିକ୍ଷୋଭିତ ନୀଳ ଜଳଧିର ଭ୍ରାନ୍ତି ଉପୁଜାଏ । ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ଇଟାଭାଟି ସବୁଜ ପ୍ରକୃତି ଦ୍ୱାରା ପରିବେଷ୍ଟିତ ହୋଇ ମସ୍ତକ ଉତ୍ତୋଳନ କରୁଥାଏ । ଟେମ୍ପୁରୁ ଷ୍ଟେସନର ପୂର୍ବରୁ ଏହିପରି ସାତ ଆଠଟି ଇଟାଭାଟି ଦେଖିବାକୁ ମିଳେ । କେଉଁ କାଳରୁ ଭାଟି ପୋଡ଼ା ହେଉଥିଲା । ଇଟାଗୁଡ଼ିକର ସଦ୍‌ବ୍ୟବହାର ହୋଇପାରି ନାହିଁ । ଭାଟିଗୁଡ଼ିକ ଉପରୁ ଅଧାଯାଏ ଭାଙ୍ଗି ପଡ଼ିଛି ।

ଗାଡ଼ି ଚାଲିଥାଏ । ଯେ ଯେଉଁଠି ଇଚ୍ଛା ଗାଡ଼ି ଉପରକୁ ଚଢ଼ିଯାଏ, ଘର ପାଖ ହୋଇଗଲେ ପୁଣି ଗାଡ଼ିରୁ ଓହ୍ଲାଇ ପଡ଼େ । ଏଭଳି ଯାତ୍ରୀଙ୍କ ପାଇଁ ଟିକେଟ୍ ଦରକାର ହୁଏ ନାହିଁ । ନଉପଡ଼ା ଓ ଟେକିଲି ମଧ୍ୟରେ ଯେତେ ଗାଁ ଅଛି ସେ ଗାଁଗୁଡ଼ିକର ଛାତ୍ରମାନେ ସକାଳବେଳେ ଏଇ ଗାଡ଼ିରେ ଯାଇ ଟେକିଲିରେ ସ୍କୁଲରେ ଯୋଗ ଦିଅନ୍ତି । ଠିକ୍ ଜାଗା ଦେଖି ଡ୍ରାଇଭର ହନୁମାନର ଗତିକୁ ଧିମେଇ ଦିଏ । ଛାତ୍ର ଛାତ୍ରୀମାନେ ଗାଡ଼ି ଉପରକୁ ଉଠିଯାଆନ୍ତି ।

ଇଞ୍ଜିନ ଉପରୁ ସଞ୍ଜ ଅନ୍ଧାରର ସୁଯୋଗ ନେଇ କେତେ ଲୋକ କୋଇଲା ଚୋରି କରିବାର ଦେଖିଛି । ସେମାନେ ରାସ୍ତା ପାର୍ଶ୍ୱରେ ଛିଡ଼ା ହୋଇ ହାତ ବଢ଼ାଇ ଇଞ୍ଜିନ ଉପରୁ କୋଇଲା ଆଣି ଅନ୍ଧାରିଆ ବୁଦାକୁ ଲକ୍ଷ୍ୟ କରି ଫିଙ୍ଗି ଦିଅନ୍ତି ଏବଂ ଗାଡ଼ି ଚାଲିବା ପରେ ସେଗୁଡ଼ିକୁ ବୋଝାଇ କରି ନେଇ ଯାଆନ୍ତି ।

ଗୋଟିଏ ଗୋଟିଏ ବଡ଼ ଷ୍ଟେସନରେ ଗାଡ଼ି ପାଣି ନିଏ । ଇଞ୍ଜିନର ଉପରେ ଗୋଟିଏ ବଡ଼ କାହାଳୀ ଲାଗେ ଏବଂ ସେହି କାହାଳୀରେ ଏକ ନଳାରୁ ପାଣି ଆସି ପଡ଼େ । ଏହି ଷ୍ଟେସନରେ ଯେଉଁ ପାଣି ଟ୍ୟାଙ୍କ ଥାଏ ସେଗୁଡ଼ିକୁ କୁଲିମାନେ ବାଲଟିରେ ପାଣି ବୋହି ପୂର୍ଣ୍ଣ କରି ଥାଆନ୍ତି । ବିଂଶ ଶତାବ୍ଦୀରେ ଏଭଳି ଆୟୋଜନ ସମସ୍ତଙ୍କୁ ନିଶ୍ଚୟ ଆଶ୍ଚର୍ଯ୍ୟ ଲାଗିବ ।

ଗୋଟାଏ ବିଷୟ ମୋତେ ସବୁଠୁ ଆଶ୍ଚର୍ଯ୍ୟ ଲାଗିଛି । ଏଇ ପୂଜା ଛୁଟି ପରେ କଟକରୁ ଫେରୁଛି । ବର୍ଷା ଝଡ଼ି ଦିନସାରା ଲାଗିଥାଏ । ଗାଡ଼ି ପାଦାପଦ ଷ୍ଟେସନ ପାର ହୋଇ ଟେମ୍ପୁରୁ ଆଡ଼କୁ ଏକ ଉଠାଣିରେ ଗତି କରୁଥାଏ । ହଠାତ ଗାଡ଼ିର ବେଗ କାହିଁକି କମିଗଲା । ମନେହେଲା ଯେପରି ଗାଡ଼ି ଆଗକୁ ଯିବାପାଇଁ ଖୁବ୍ ସଂଗ୍ରାମ କରୁଛି । ଦୁଆର ବାଟେ ଆଗକୁ ଚାହିଁ ଦେଖିଲି ଇଞ୍ଜିନର ଚିମନିରୁ ଜୋରରେ କଳା ଧୂଆଁ ବାହାରୁଛି । ବେଳେ ବେଳେ ଜଣେ ଦୁଇଜଣ

ଲୋକ ଇଞ୍ଜିନରୁ ଓହ୍ଲାଇ ପଡୁଥାନ୍ତି ଓ ବସ୍ତାରୁ କଅଣ ଗୋଟାଇ ଇଞ୍ଜିନ ସାମନାକୁ ଫିଙ୍ଗୁଥାନ୍ତି । ଏପରି ଅଭିନବ ବ୍ୟାପାର ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା ଯେତିକି, ଭୟ ଲାଗିଲା ସେତିକି । ଭାବିଲି ହୁଏତ ଇଞ୍ଜିନରେ ନିଆଁ ଲାଗିଗଲା । କିନ୍ତୁ ପରେ ଲୋକମାନଙ୍କୁ ପଚାରି ବୁଝିଲି ଯେ, ବର୍ଷା ହେଉଥିବାରୁ ରେଳଧାଡା ପିଚ୍ଛିଳ ହୋଇ ଯାଇଛି, ସେଥି-ପାଇଁ ରେଳ ଚକ ଆଗେଇ ଯାଇ ପାରୁ ନାହିଁ । ରାସ୍ତାକୁ କର୍କଶ କରିବା ପାଇଁ ବାଲି ଓ କାଦୁଅ ପକାଯାଉଛି । ସତକୁ ସତ ଗାଡ଼ି ଯାଇ ପାରିଲା ନାହିଁ । କେତେଜଣ ଲୋକ ଗାଡ଼ିରୁ ଓହ୍ଲାଇ ଇଞ୍ଜିନ ଆଗରୁ ପ୍ରାୟ ଏକ ଫର୍ଲଙ୍ଗ ପର୍ଯ୍ୟନ୍ତ ବାଲି ଓ କାଦୁଅ ପକାଇଲେ । ତା' ପରେ ଗାଡ଼ି ଚାଲିଲା ।

କାହାରି କୌଣସି ବିପଦ ପଡ଼ିଲେ କିମ୍ବା କୌଣସି ଦରକାର ହେଲେ ଗାଡ଼ି ବନ୍ଦ କରିବା ପାଇଁ ପ୍ରତ୍ୟେକ ଗାଡ଼ିରେ ଆଲାର୍ମ ଚେନ୍ ଥାଏ । କିନ୍ତୁ ଏ ଗାଡ଼ିରେ ସେପରି ଆୟୋଜନ ନାହିଁ । ଶୁଣିଲି, କେହି ଯଦି ଗାଡ଼ି ଅଟକାଇବାକୁ ଚାହେଁ, ସେ ଚଳନ୍ତା ଗାଡ଼ିରୁ ଧୀରେ ଓହ୍ଲାଇ ପଡ଼ି ପଛ ଡବାରେ ଥିବା ଗାର୍ଡଙ୍କୁ ଗାଡ଼ି ବନ୍ଦ କରିବାକୁ ସଙ୍କେତ ଦିଏ । ଗାର୍ଡ ଗାଡ଼ି ବନ୍ଦ କରେ ।

ଏ ଅଞ୍ଚଳର ଷ୍ଟେସନଗୁଡ଼ିକର କୁଲିମାନଙ୍କର ଆଦର୍ଶ ଅନୁକରଣୀୟ । କଟକ ଷ୍ଟେସନରେ ଗାଡ଼ି ପହଞ୍ଚିଗଲେ କୁଲିମାନେ ଯାତ୍ରୀମାନଙ୍କର ଜିନିଷପତ୍ର ବୋହିବା ପାଇଁ କଳି କରିବାର ଦେଖାଯାଏ । ରିକ୍ସାରେ ଯଦି କୌଣସି ଭଦ୍ରଲୋକ କଟକ ଷ୍ଟେସନ ଆଡ଼କୁ ଯାଉଥାଏ, ତେବେ ସେ ପଛେ ପଛେ ଥାର୍ଡକ୍ଲାସ ବୁକିଂ ଅଫିସ ପାଖରୁ କୁଲିମାନେ ଧାଆନ୍ତି ରିକ୍ସା ଯେ ଆଗେ ଜିନିଷ ଧରି ପାରିଲା ତାର ଜିତାପଟ । କିନ୍ତୁ ପଲାଶା ବା ନଉପଡ଼ା ଷ୍ଟେସନରେ ଗାଡ଼ିରୁ ବା ବସରୁ ଓହ୍ଲାଇପଡ଼ି 'କୁଲି, କୁଲି ଡାକିବା ସତ୍ତ୍ୱେ କେହି ଜବାବ ଦେବେ ନାହିଁ । ଅଥଚ ସେଇଠି ଆପଣଙ୍କ ପାଖରେ କୁଲି ଛିଡ଼ା ହୋଇଥିବ । ଜିନିଷ ବୋହିବା ପାଇଁ ସେମାନେ କେବେ କଳି କରନ୍ତି ନାହିଁ । ଆପଣଙ୍କର ଜିନିଷଗୁଡ଼ିକ ନିରାପଦରେ ସେମାନେ ବୋହି ନେଇଯିବେ । କୁଲିମାନେ ଗୋଟି ଗୋଟି ହୋଇ ଯାତ୍ରୀମାନଙ୍କର ଜିନିଷ ନେଇ ଗାଡ଼ିରେ ଉଠାଇ ଦିଅନ୍ତି । ଗାଡ଼ି ଚାଲିଯିବା ପରେ ସମସ୍ତେ ଏକ ସ୍ଥାନରେ ଏକାଠି ହୁଅନ୍ତି, ସେ ଯେତେ ପଇସା ଆଣିଥାଏ ସବୁ ମିଶାଇ ସମାନଭାବରେ ନିଜ ନିଜ ଭିତରେ ବାଣ୍ଟି ନିଅନ୍ତି । ସମାଜର କୁଲି ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ଏଭଳି ସାମ୍ୟବାଦ ନୀତି ବାସ୍ତବିକ ପ୍ରଶଂସନୀୟ । କିନ୍ତୁ ଏଥିଯୋଗୁଁ କେତେକ ସ୍ଥଳରେ ଯାତ୍ରୀ ଅସୁବିଧାରେ ପଡ଼ିଥାଏ । ପଇସା ଯାହା ମିଳେ ସମସ୍ତେ ତ ତାହା ସମାନ ଭାବରେ ଭାଗ କରି ନିଅନ୍ତି । ତେଣୁ ସବୁ କୁଲି ମିଳି ଦୁଇ ତିନିଜଣ ଯାତ୍ରୀଙ୍କର ଜିନିଷ ଗାଡ଼ିକୁ ଉଠାଇ ଦିଅନ୍ତି, କିନ୍ତୁ ପରେ କାହାର କେଉଁ ଜିନିଷ ଭୁଲି ଯାଆନ୍ତି । ଫଳରେ କାହାକୁ କେତେ ଭଡ଼ା ମାଗିବାକୁ ହେବ ତାହା ଠିକ୍ ଭାବେ ବିଚାର କରି ନ ପାରି ଖୁବ୍ ଅଧିକ ମାଗିଥାନ୍ତି । ମେଲ ଗାଡ଼ିରୁ ଓହ୍ଲାଇ ଆଲୋକ ଗାଡ଼ିରେ ଉଠାଇ ଦେବା ପାଇଁ ମାତ୍ର ଗୋଟିଏ ବେଡିଂ ପାଇଁ କୁଲି ବେଳେ ବେଳେ ଏକ ଟଙ୍କା ମାଗିଛି । ପରେ ଅନେକ ସମୟ ତକରାର ହେବା ପରେ ମୁଁ ବୁଝି ପାରିଛି, ଆଉ ଜଣକର ଜିନିଷକୁ ମୋର ବୋଲି ମନେ କରି ସେ ଏତେ ଅଧିକ ଚାହୁଁଛି ।

ଗାଡ଼ିରେ ଯିବାବେଳେ ଉଭୟ ପାର୍ଶ୍ୱରେ ବିଭିନ୍ନ ପ୍ରକାର ବୃକ୍ଷ ଓ ଅସଂଖ୍ୟ ପାହାଡ଼ ଦେଖିବାକୁ ମିଳେ। ପାହାଡ଼ଭରା ପରିବେଷ୍ଟନୀ ଭିତରେ ଜନ୍ମଲାଭ କରି ଏଠାର ଲୋକମାନେ ପାହାଡ଼କୁ ଭଲ ପାଇବାକୁ ଶିଖିଛନ୍ତି। ମୋର ମନେ ଅଛି, ଥରେ ଗାଡ଼ିରେ ଆସୁଥିଲି, ଜଣେ ପାରଳାଖେମୁଣ୍ଡିର ଲୋକ କଟକ ଜିଲ୍ଲାର ତିର୍ତ୍ତୋଲରେ ଏକ ମାସ ରହି ସେହି ଡବାରେ ଘରକୁ ଫେରୁଥାଏ। ସେ ତାର ନିଜର ଅଭିଜ୍ଞତାମାନ ତାର ଜଣେ ବନ୍ଧୁ ଆଗରେ ବର୍ଣ୍ଣନା କରୁଥାଏ, "ସେ ଜାଗାଟା ମୋତେ ଆଦୌ ଭଲ ଲାଗିଲା ନାହିଁ। ଚାରିଆଡେ ଖାଲି ଜଙ୍ଗଲ। ଯେଉଁ ଗୋଟାଏ ପାହାଡ଼ ଭଲା ଥାଆନ୍ତା। ଲୋକମାନେ କିପରି ସେଠାରେ ବଞ୍ଚି ରହିଛନ୍ତି, ମୁଁ ବୁଝିପାରୁ ନାହିଁ।

ସଉରମାନେ ଖରାଦିନେ ଏଇ ପାହାଡ଼ ଉପରିସ୍ଥ ଅରଣ୍ୟରେ ଲକ୍ଷ ଦିହୁଳି ଜାଳିବାର ଦୃଶ୍ୟ ଗାଡ଼ିରୁ ଦେଖାଯାଏ। ଏମାନେ ପାହାଡ଼ରେ ମାଟିଥିବା ସ୍ଥାନମାନଙ୍କର ବୁଦାଗୁଡ଼ିକରେ ନିଆଁ ଲଗାଇ ଦିଅନ୍ତି। ବୁଦାଗୁଡ଼ିକ ପୋଡ଼ିଯାଇ ତାର ପାଉଁଶ ଓ ଅଙ୍ଗାର ଜମା ହୋଇଯାଏ। ବର୍ଷାଦିନର ଠିକ୍ ପୂର୍ବରୁ ସେମାନେ ଏହା ଉପରେ କାଙ୍ଗୁ, ସୁଆଁ, ମକା, ମାଣ୍ଡିଆ ପ୍ରଭୃତି ବୁଣି ଦିଅନ୍ତି। ପାଉଁଶ ଓ ଅଙ୍ଗାରରୁ ସାର ଗ୍ରହଣ କରି ଏଥିରୁ ଖୁବ୍ ତେଜୀୟାନ ଗଛ ଜାତ ହୁଏ। ଖରାଦିନେ ଯେଉଁଠି ନିଆଁ ଜଳୁଥାଏ, ବର୍ଷା ପାଣି ପଡ଼ିଲେ ତାହା ସବୁଜ ଶସ୍ୟକ୍ଷେତ୍ରରେ ପରିଣତ ହୁଏ। ଏହାକୁ ପୋଡ଼ୁ ଚାଷ କହନ୍ତି। ଜଙ୍ଗଲ ଦ୍ୱାରା ପରିବେଷ୍ଟିତ ହୋଇ ଏହି ଶସ୍ୟକ୍ଷେତ୍ରଗୁଡ଼ିକ ଗାଡ଼ିରେ ଯାଉଥିବା ଯାତ୍ରୀମାନଙ୍କର ଦୃଷ୍ଟିପଥାରୂଢ଼ ହୁଏ।

———

# ଭୂତ-କୋଠି

ଭୂତ କୋଠି ନା ଶୁଣିଥିବେ, ଏଇ ଆମ ପୁରୀ ସାଗର ବେଳାରେ ସମୁଦ୍ର କୂଳେ କୂଳେ ସ୍ୱର୍ଗଦ୍ୱାର ପାର ହୋଇ ଚାଲିଗଲେ ଅନେକ ଦୂରପରେ ଦେଖିବେ କେତେକ ସୁନ୍ଦର ସୁନ୍ଦର କୋଠାଘର । ସେ ଘର ଭିତରେ ପଶିଗଲେ ଦିନରେ ମଧ୍ୟ ଖାଁ ଖାଁ ଗୋଡ଼ାଉବ । ଘରଗୁଡ଼ିକ ଖାଲି ପଡ଼ିଛି । ଏଥିରେ ଭୂତମାନେ ରହନ୍ତି । ପୁରୀ ସହରରୁ ଯେତେ ଲୋକ ମରନ୍ତି ସେମାନଙ୍କ ପ୍ରେତ ଏଇ ଘରଗୁଡ଼ିକରେ ବାସ କରନ୍ତି । ଦିନରେ ସେଗୁଡ଼ିକ ଦେଖାଯାଆନ୍ତି ନାହିଁ । ରାତିହେଲେ ସେମାନେ କବାଟ ଖୋଲି ଢୋ ଢୋ ଶବ୍ଦ କରନ୍ତି । ଛାତ ଉପରେ ଖପ୍ ଖପ୍ ଶବ୍ଦ ହେଲେ ଜାଣିବେ ଯେ, ଭୂତ ଆସିଲା । ବେଶୀ ରାତି ହୋଇଗଲେ ଖୁବ୍ ଜୋରରେ ଶବ୍ଦ ହୁଏ । ମଣିଷ ଦେଖିଲେ ଭୂତ ତାର ହଜାର ଦାନ୍ତ ଦେଖାଇ ଜିଭ କାଢ଼ି ଡରାଏ । ଯେତେ ସାହସୀ ଲୋକ ହୋଇଥାଉ ପଛେ ତାର ଛାତି ବୁଡ଼ିଯିବ । ନୋଳିଆମାନଙ୍କୁ ପଚାରିବେ କେତେ ରୂପ ଧରି ଭୂତ ଦେଖାଦିଏ, କେତେ ଭଳିକି ଭଳି ବାହାନା କରି ମଣିଷ ପାଖକୁ ଆସେ ସେମାନେ କହିବେ ।

ଏ ଭୂତମାନଙ୍କର ଗୋଟିଏ ହେଡ୍ କ୍ୱାର୍ଟର ଥିଲା, କେଉଁଠି ଜାଣନ୍ତି ? କଲେଜ ସାମନା ଯେଉଁ ରାସ୍ତା ସମୁଦ୍ର କୂଳର ଫ୍ଲାଗ୍‌ଷ୍ଟାଫ ଯାଏ ଯାଇଛି ତାରି ଡାହାଣ ପାଖରେ ଏକ ଦୋମହଲା କୋଠା ଦେଖିବାକୁ ପାଇବେ । ଖୁବ୍ ଉଚ୍ଚ ହୋଇ ଦିଶୁଛି । ଆଜି ସିନା ଏଠି ମଣିଷ ରହିଲେଣି । ପୁରୀର ପୁରୁଣା ପୁରୁଣା ଲୋକଙ୍କୁ ପଚାରିଲେ ଜାଣିବେ କୋଡ଼ିଏ ବର୍ଷ ତଳେ ଏ ଜାଗା କିପରି ଥିଲା । ଚାରିପାଖରେ ଖୁବ୍ ଝଙ୍କାଳିଆ ଗଛସବୁ ଏମିତି ଗହଳ ହୋଇ ରହିଥିଲା ଯେ, କୋଠା ଘରଟି ରାସ୍ତାକୁ ଭଲରୂପେ ଦିଶୁ ନଥିଲା । ଏଇ ଘର କେତେ ମଣିଷକୁ ନ ଖାଇଛି । କେତେ ସାହସ ବନ୍ଧୁକ ଧରି ଏଠି ରାତି ଜଗିଛନ୍ତି ; କିନ୍ତୁ ସକାଳୁ ଦେଖିଲା ବେଳକୁ ପିଣ୍ଡରେ ପ୍ରାଣ ନଥାଏ । କାହାର ବା ସାହସ ଅଛି ଅନ୍ଧାର ହେଲେ ସେ ଫାଟକ ଟପି ଆଗକୁ ଯିବାକୁ । ଏହି ଘରର ପଛଆଡ଼େ ଗୋଟିଏ ଝଙ୍କାଳିଆ ବରଗଛ ଥାଏ ଯେ, ଦିନସାରା ଭୂତ-ମାନେ ସେହି ଗଛରେ ଆଶ୍ରୟ ନିଅନ୍ତି । ଠିକ୍ ଯେମିତି ସୂର୍ଯ୍ୟ ମହୋଦଧିରେ ବୁଡ଼ିଯାନ୍ତି, ଗଛ ଖାଲି କମ୍ପିଉଠେ । ଭୂତମାନେ ଗୋଟି ଗୋଟି ହୋଇ ଡାଳରୁ ଡାଳ ଡେଇଁ ଚାରିଆଡ଼କୁ ବାହାରନ୍ତି । ନିଶା ଯେତେବେଳେ ଗର୍ଜିଉଠେ, ଏମାନେ ଖଡ଼ଖଡ଼୍ ମସ୍‌ମସ୍ ଶବ୍ଦ କରି ସହରସାରା ବୁଲନ୍ତି । ଠିକ୍ ଅଧରାତି ହେଲେ ଏମାନେ ଆସି କୋଠିରେ ପଶନ୍ତି । ସେତେବେଳକୁ ଯିଏ ସେ ଘରେ ଥାଉ ତାର ଆଉ ରକ୍ଷା ନାହିଁ ।

ଆଜି ସେ ଘରକୁ ଦେଖିଲେ କେହି ଆଦୌ ବିଶ୍ୱାସ କରିପାରିବେ ନାହିଁ ଯେ ଦିନେ ତାହା ଏପରି ଭୟାବହ ଥିଲା । ଭୂତମାନଙ୍କର ହେଡ୍ କ୍ୱାର୍ଟର ଏଠାରେ ଆଉ ନାହିଁ, ଭୂତମାନେ ବିଛାଡ଼ି ହୋଇ

ସ୍କୁଲ ଘର, ଡାକ୍ତରଖାନା, ସମୁଦ୍ରକୂଳ ପ୍ରଭୃତି ସ୍ଥାନମାନଙ୍କରେ ଆଶ୍ରୟ ନେଇଛନ୍ତି ।

ସଞ୍ଜର କାଳିଅନ୍ଧାର ଭିତରେ ଯଦି କେବେ ଏକା ବାହାରକୁ ବାହାରନ୍ତି ତେବେ ଆପଣ ନିଶ୍ଚୟ ଭୂତ ହାବୁଡରେ ପଡ଼ିବେ, ଏତେ-ବେଳେ ଭୂତ ଦେଖାଯିବେ ନାହିଁ ; କିନ୍ତୁ ଘଞ୍ଚା କଦଳୀ ଝାଡ଼ ବଗିଚା ଭିତରେ, ଅଠରନଳା ପୋଲ ପାଖରେ ଭୂତ ଖସ୍ ଖସ୍ ଶବ୍ଦ କରି ଚଲାବୁଲା କରୁଥିବାର ଶୁଣିପାରିବେ । ଡରନ୍ତୁ ନାହିଁ । ସେତେବେଳେ ଏ ଭୂତ ଆପଣଙ୍କର କୌଣସି କ୍ଷତି କରିପାରିବ ନାହିଁ । ରାତିଅଧ ନ ହେବା ପର୍ଯ୍ୟନ୍ତ ଆପଣ ତାର ରୂପ ଦେଖି ପାରିବେ ନାହିଁ ।

ଆପଣଙ୍କର ଯଦି ଭୂତପ୍ରେତଠାରେ ବିଶ୍ୱାସ ନଥାଏ ତାହା ହେଲେ ପୁରୀ ଆସନ୍ତୁ, ନିଶ୍ଚୟ ଆପଣଙ୍କର ବିଶ୍ୱାସ ଆସିଯିବ । ମୁଁ ମଧ୍ୟ ଗତ ୧୯୫୩ ମସିହା ପର୍ଯ୍ୟନ୍ତ ଭୂତ ଦେଖି ନଥିଲି । ଏହି ବର୍ଷ ଖରାଦିନେ ମୁଁ ପ୍ରଥମଥର ପାଇଁ ଭୂତ ଦେଖିଲି । ପିଲାଦିନେ ଅନ୍ଧାର ଘରେ ଅନ୍ଧାର ଗୁଡ଼ୁଗୁଡି ଖୋଜି ପାଉ ନଥିଲି । ବାଡ଼ି ପଛଆଡେ ରାତିରେ ଯେଉଁ ଜଣଖଟା ନିଆଁମୁଣ୍ଡା ଭଳି ରୂପ ଧରି ଗଡ଼ି ଗଡ଼ି ଯିବା ଆସିବା କରୁଥିଲା ତାକୁ ଦେଖିବାକୁ ଦୂରେଥାଉ ତା କଥା ଶୁଣି ତ ମୁଁ ଛାନିଆ ହୋଇଯାଇଥିଲି । ଶୁଣିଛି ଆମ ଗାଁର ବଳୀୟାର ସିଂହ ଏଇ ଭଉଁ ଯୋଗୁଁ ବଡ଼ ଲୋକ ହୋଇଛି । କଅଣ ହେଲା କି । ବଳୀୟାର ସିଂହ ସେତେବେଳେ ଭାରୀ ଗରିବ ଥିଲା । ଓଳିଏ ଖାଇ ଓଳିଏ ଉପାସ ରହୁଥିଲା । ଦିନେ ରାତିରେ ସେ ବାହାରକୁ ଉଠିଛି, ଦେଖିଲା ଘର ବାରିଆଡେ ଗୋଟିଏ ନିଆଁ ପେଣ୍ଡୁଲା ଗଡ଼ି ଗଡ଼ି ଯାଉଛି । ତା' ଘରୁ ସେ ଛାଞ୍ଚୁଣୀଟିଏ ଆଣି ଖୁବ୍ ଜୋରରେ ସେ ନିଆଁ ପିଣ୍ଡୁଳା ଆଡ଼କୁ ପିଟିଲା । ଛାଞ୍ଚୁଣୀଟି ଯେମିତି ନିଆଁ ପିଣ୍ଡୁଳାଟାରେ ବାଜିଛି, ପିଣ୍ଡୁଳାଟି ସଙ୍ଗେ ସଙ୍ଗେ ଗୋଟିଏ ସୁନାମୁଣ୍ଡା ପାଲଟିଗଲା । ସେଇ ସୁନାମୁଣ୍ଡା ଯୋଗୁଁ ବଳୀୟାର ସିଂହ ଆଜି ବଡଲୋକ ।

ଆଉ ଏକ ଜାତୀୟ ଭୂତ ବିଷୟରେ ମଧ୍ୟ ମୁଁ ଶୁଣିଥିଲି । ଏ ଭୂତ ଅଦ୍‌ଭୂତ ପ୍ରକାରର ଆଚରଣ କରେ । ଯଦି ଆପଣ ଅନ୍ୟ କାହାକୁ ଶୋଇବାରୁ ଉଠାଇବାକୁ କହିଥାଆନ୍ତି, ତାହାହେଲେ ଏ ଭୂତ ଆପଣଙ୍କ କଥା ଶୁଣିନିଏ ଓ ରାତି ଅଧରୁ ଆସି କବାଟରେ ଖଟଖଟ କରି ଉଠାଏ । ସେ ଆପଣଙ୍କୁ ଡାକିନେଇ ରାତିସାରା ହଇରାଣ କରିବ । ସେଥିପାଇଁ ଗାଁରେ ରାତିରେ ଶୋଇବା ପୂର୍ବରୁ କେହି ଆଉ କାହାକୁ ସକାଳୁ ଉଠାଇବାକୁ କହନ୍ତି ନାହିଁ ।

ଭୂତ ବିଷୟରେ ଏଭଳି ଧାରଣାମାନ ପିଲାଦିନରୁ ଥିଲା । କିନ୍ତୁ ମୁଁ ଭୂତ ଦେଖିବାର ସୁଯୋଗ ପାଇ ନଥିଲି । ସେଥିପାଇଁ ମୋର ଭୂତ ପ୍ରେତମାନଙ୍କଠାରେ ଆଦୌ ବିଶ୍ୱାସ ନଥିଲା । ଭୂତ କାହାଣୀ ଶୁଣିଲେ ମୁଁ ତାକୁ କପୋଳକଳ୍ପିତ ଓ ଅତିରଞ୍ଜିତ ବୋଲି ଧରିନେଉଥିଲି । ମୋର ଧାରଣା ଥିଲା ଯେ, ଏ ସବୁ ହେଉଛି ନିଜ ଭାବନାର ଅନୁରୂପ ଛବି । ନିଜ ମନ ଭିତରେ ଭୟ ଥିବାରୁ ନିର୍ଜନ ସ୍ଥାନରେ ବାୟୁ ପ୍ରବାହର ଶବ୍ଦ ଶୁଣି ମଣିଷ ଚମକି ଉଠେ । ରାତିର ଝାପ୍‌ସା ଆଲୋକରେ ଏକ ବିକଟାଳ ମୂର୍ତ୍ତିର କଳ୍ପନା କରି ତାକୁ ଭୂତ ବୋଲି

ଶୁଣି ତାର ଛାତି ଥରିଯାଏ । ଏହିଭଳି ବିଶ୍ୱାସ ମୋର ରହି ଆସିଥିଲା ଗତ ୧୯୫୩ ମସିହା ପର୍ଯ୍ୟନ୍ତ । ଯେଉଁଠି ଭୂତ ଅଛି ବୋଲି ମୁଁ ସନ୍ଧାନ ପାଏ ସେ ସ୍ଥାନକୁ ତନ୍ନ ତନ୍ନ ପର୍ଯ୍ୟବେକ୍ଷଣ କରିବାକୁ ମୋର ଇଚ୍ଛା ହୁଏ । ପ୍ରତ୍ୟେକ ସ୍ଥଳରେ ମୁଁ ଦେଖିଛି ଯାହାକୁ ଭୂତ କୁହାଯାଉଛି ତାହା ପ୍ରକୃତରେ ମନୁଷ୍ୟ ମନର ଭ୍ରାନ୍ତି । କେଉଁଠି ଚନ୍ଦ୍ରାଲୋକରେ ଗୋଟିଏ ବୁଢ଼ା ଭୂତ ଭଳି ଦିଶୁଛି, କେଉଁଠି ନିସ୍ତବ୍ଧତା ମଧ୍ୟରେ ବୃକ୍ଷରୁ ପତ୍ର ପଡ଼ିବା ଶବ୍ଦ ଭସ୍ପାର୍ତ୍ତମାନବକୁ ଭୂତର ଚିତ୍କାର ପରି ପ୍ରତୀୟମାନ ହେଉଛି ।

୧୯୫୩ ମସିହା ମେ ମାସର ପ୍ରଥମ ସପ୍ତାହ । ଏ ସମୟରେ ପୁରୀ ବେଶ ଉପଭୋଗ୍ୟ । ମୋଚି ସାହି ଛକରୁ ଲକ୍ଷ୍ମୀ ଟକୀଆଡେ ଯିବା ବାଟରେ ବାମ ପାଖକୁ ଗୋଟିଏ ଗଳିରେ ପଶିଗଲେ ଗୋଟିଏ ହାଇ ସ୍କୁଲ ପଡ଼େ । ଏହା ହେଉଛି ବିଶ୍ୱମ୍ଭର ବିଦ୍ୟାପୀଠ । ଏହି ସ୍କୁଲ ଘରର ଗୋଟିଏ କୋଠରୀରେ ମୁଁ ଓ ମୋର ଜଣେ ବନ୍ଧୁ ରହିଥିଲୁ । ସ୍କୁଲ ହତା ଭିତରେ ଆଉ ଲୋକ କେହି ନ ଥାନ୍ତି । ଏହାର ଏକ ପାଖରେ ଗୋଟିଏ ପୋଖରୀ, ଆଉ ଏକ ପାଖରେ ଗୋଟିଏ ମସ୍‌ଜିଦ୍ ଥାଏ । ସ୍କୁଲ ଘର କୋଠରୀ ଗୁଡ଼ିକରେ ଯେଉଁ ଝରକା ସବୁ ଥିଲା ସେଗୁଡ଼ିକ ଖୁବ୍ ବଡ଼ ବଡ଼ ଓ ସେଥିରେ ରେଲିଂ ନ ଥିଲା । ସେଥିପାଇଁ ଘରେ ତାଲା ପକାଇ ବାହାର ବାରଣ୍ଡାରେ ଦୁଇଜଣ ଯାକ ଶୋଇଲୁ । ରାତିର ପ୍ରଥମ ପ୍ରହରରେ ଚନ୍ଦ୍ରାଲୋକରେ ସ୍କୁଲ ହତାସାରା ଆଲୋକିତ ହୋଇ ଯାଇଥାଏ । ବଙ୍ଗୋପସାଗର ଉପରୁ ପ୍ରବାହିତ ଶୀତଳ ବାୟୁ ଘରର ପ୍ରତ୍ୟେକ ରନ୍ଧ୍ରରେ ପ୍ରବେଶ କରୁଥାଏ । ସ୍କୁଲ ଘରର ଅଧିକାଂଶ କୋଠରୀ ଓ ଝରକାର ଦୁଆର ଖୋଲା ଥିବାରୁ କବାଟଗୁଡ଼ିକ ବାୟୁ–ତାଡ଼ିତ ହୋଇ ପିଟି ହେବା ଫଳରେ ବାରମ୍ବାର ଢୋ ଢା ଶବ୍ଦ ହେଉଥାଏ । ବାରଣ୍ଡାର ତଳକୁ ବାଲୁକାମୟ ପ୍ରାନ୍ତର । ବେଳେ ବେଳେ ମୃଦୁ ମନ୍ଦ ପବନରେ ଗୋଟିଏ ଗୋଟିଏ ପତ୍ର ବାଲୁକା ଉପରେ ଘୁଷୁରି ଘୁଷୁରି ଅନେକ ସମୟ ପର୍ଯ୍ୟନ୍ତ ଏପରି ଶବ୍ଦ କରୁଥାଏ ଯେ, ନ ଜାଣିବା ଲୋକ ମନେକରିବ, ସତେ ଯେପରି କୌଣସି ଅଦୃଶ୍ୟ ବସ୍ତୁ ଆମ ସମ୍ମୁଖରେ ଯାତାୟାତ କରୁଛି । ମୁଁ ବନ୍ଧୁଙ୍କୁ ଦେଖାଇ କହିଲି ଲୋକମାନେ ଏହାକୁ କିପରି ଭୂତ ବୋଲି ଭାବି ନିଅନ୍ତି । ପୁରୀରେ ଖୁବ୍ ପବନ ହେଉଥିବାରୁ ପବନ ଘର ଭିତର ଦେଇ ଅତିକ୍ରମ କରିବା ସମୟରେ ପ୍ରତ୍ୟେକ ଘରୁ କୌଣସି ନା କୌଣସି ଶବ୍ଦ ଉତ୍ପନ୍ନ ହୋଇ ଥାଏ । ସେଥିପାଇଁ ଏଠାରେ ଏତେ ଅଧିକ ଭୂତକୋଠି । ବନ୍ଧୁ ମୋର ତଥ୍ୟକୁ ନୀରବରେ ସମର୍ଥନ କଲେ ସୁନ୍ଦର ପବନ ବହୁଥାଏ । ଖୁବ୍ ଶୀଘ୍ର ଆମକୁ ନିଦ ଲାଗିଗଲା ।

କେତେବେଳ ଯାଏ ଏମିତି ଶୋଇ ରହିଲୁ କହି ପାରିବି ନାହିଁ । ହଠାତ୍ ମୋର ନିଦ କାହିଁକି ଭାଙ୍ଗିଗଲା । ବାହାରକୁ ଚାହିଁଲି । ଗଭୀର ଅନ୍ଧକାର । ଚନ୍ଦ୍ର ବୁଡ଼ି ଗଲାଣି କେତେବେଳୁ । କାଳ ପୁରୁଷ ପୁଞ୍ଜ ଚକ୍ରବାଳ କୋଳେ ଲୁଚିଯାଉଛି । ସେଥିରୁ ଅନୁମାନ କଲି, ସେତେବେଳେ ରାତି ପ୍ରାୟ ଏଗାରଟା ବାରଟା ଭିତରେ ହେବ । ଏହି ଅନ୍ଧକାର ମଧ୍ୟ–ଦେଇ କୌଣସି ମନୁଷ୍ୟର ଧ୍ୱନି ମୋର କର୍ଣ୍ଣକୁହରରେ ପ୍ରବେଶ କଲା । ଆଶ୍ଚର୍ଯ୍ୟ ହୋଇଗଲି । ଅର୍ଦ୍ଧ ରାତ୍ରିରେ ଏହି ଅନ୍ଧକାର ଭେଦ କରି କେଉଁ ଉଦ୍ଦେଶ୍ୟରେ ଏଠାରେ ମନୁଷ୍ୟ ପାଦ ପଡ଼ିଲା ମୁଁ ବୁଝି ପାରିଲି

ନାହିଁ । କ୍ରମେ ସେ ଧ୍ୱନି ଆମର ନିକଟେଇ ଆସିଲା । ସେତେବେଳେ ମୁଁ ବୁଝିପାରିଲି ଦୁଇଜଣ ମନୁଷ୍ୟ କଥାବାର୍ତ୍ତା ହୋଇ ଆମ ଆଡକୁ ଆସୁଛନ୍ତି । ମୁଁ ସେମାନଙ୍କ ପରିଚୟ ପଚାରିବାରୁ ସେମାନେ କହିଲେ ଯେ, ସେମାନେ ହେଉଛନ୍ତି ଦୁଇଜଣ କନେଷ୍ଟବଳ ରାତି ଡିଉଟିରେ ଯାଉ ଯାଉ ଆମ ଦୁଇ ଜଣଙ୍କୁ ଶୋଇଥିବାର ଦେଖି ସେଠାକୁ ଆସିଛନ୍ତି ।

ଦୁଇଜଣ କନେଷ୍ଟବଳଙ୍କ ମଧ୍ୟରୁ ଜଣେ ହିନ୍ଦୁସ୍ଥାନୀ ଓ ଅନ୍ୟ ଜଣକ ଓଡ଼ିଆ । ଅନ୍ଧାରରେ ସେମାନଙ୍କର ମୁହଁ ଦେଖା ଯାଉ ନ ଥିଲା । ସେମାନଙ୍କର କଥାବାର୍ତ୍ତାରୁ ମୁଁ ଏତକ ମାତ୍ର ଅନୁମାନ କଲି । ହିନ୍ଦୁସ୍ଥାନୀ ଲୋକଟି ଆମର ପରିଚୟ ପଚାରିବାରୁ ମୁଁ ଆମର ପରିଚୟ ଦେଲି । ତାପରେ ସେ ଲୋକଟି ବାରଣ୍ଡାରେ ବସି କହିବାକୁ ଆରମ୍ଭ କଲା । "ବାବୁ, ଏ ବାରଣ୍ଡାରେ କେହି ଶୁଅନ୍ତି ନାହିଁ । ଆପଣ ଶୋଇଥିବାର ଦେଖି ଆମେ ଯାଡକୁ ଆସିଲୁ । ଏ ଘର ବିଷୟରେ ଅନେକ ଲୋକ ଅନେକ କଥା କହନ୍ତି । ଆମେ ମଧ୍ୟ ଏଠାକୁ ଆସିବାକୁ ଭୟ କରୁ ।"

କନେଷ୍ଟବଳ କଥା ଶୁଣି ମୋର କୌତୂହଳ ହେଲା । ମୁଁ ପଚାରିଲି "କାହିଁକି ଏଠାରେ ଭୟ ?"

ତା' ପରେ ସେ କହି ଚାଲିଲା, "ବାବୁ ଏଠାରେ ଭୂତ ଅଛି । ଦିନେ ଜଣେ ଲୋକ ଏଇ ଯେଉଁଠି ଆପଣ ଶୋଇଛନ୍ତି ଠିକ୍ ସେଇଠି ଶୋଇଥିଲା । ରାତି ବାରଟା ପରେ ତାକୁ ଭୂତ ମାଡ଼ି ବସିଲା । ସେ ଅଚେତା ହୋଇ ସକାଳଯାଏଁ ସେଇଠି ପଡ଼ି ରହିଥିଲା । ସକାଳେ ଲୋକେ ତାକୁ ଡାକ୍ତରଖାନାକୁ ନେଲେ । କିନ୍ତୁ ଲୋକଟି ବଞ୍ଚିପାରିଲା ନାହିଁ ।

ମୁଁ କନେଷ୍ଟବଳକୁ ଅନେକ ବୁଝାଇଲି । ଏ ଘରେ ପବନ ଯେପରି ଶବ୍ଦ କରୁଛି ତାହା ଶୁଣି ହୁଏତ ଲୋକଟି ଆଗରୁ ଭୟ ପାଇ ମନ ଭିତରେ କୌଣସି ଭୂତର କଳ୍ପନା କରିଥିଲା । ତା ପରେ ନିଜ ମନର ଭୟରୁ ତାକୁ କେହି ମାଡି ବସିବା ପରି ବୋଧହେଲା ଓ ସେଇ ଭୟରେ ହିଁ ଲୋକଟି ମରିଗଲା ।

ଏହିପରି ମୁଁ ଯେତେ ବୁଝାଇଲେ ମଧ୍ୟ ସେ ଲୋକଟି ନ ମାନେ । ସେ କହି ଚାଲିଲା, "ବାବୁ ଆମ କଥା ମାନନ୍ତୁ, ଏଠାରେ ଶୁଅନ୍ତୁ ନାହିଁ । ମୁଁ ନିଜେ ଦେଖିଛି । ଥରେ ବର୍ଷା ହେଉଥିଲା । ମୁଁ ଏଇ ବାରଣ୍ଡାରେ ଶୋଇଛି । ରାତି ଅଧ ପରେ ତ ଖାଲି ଇଟା ପଡ଼ିଲା । ମୋତେ ଏ ବାରଣ୍ଡାରୁ ନେଇ ସେ ପଡ଼ିଆରେ କିଏ ଫିଙ୍ଗି ଦେଲା ।"

ମୁଁ ଭାବିଲି ହୁଏତ କବାଟରେ ଢୋଢା ଶବ୍ଦକୁ ଲୋକଟି ଇଟା ପଡ଼ିବାର ଶବ୍ଦ ବୋଲି ଭାବିଛି । ଏହା ତାକୁ କହିବାରୁ ସେ କହିଲା, "ବାବୁ ଶବ୍ଦ ନୁହେଁ । ଆପଣ ଯଦି ବିଶ୍ୱାସ କରୁ ନାହାନ୍ତି ତେବେ ଦେଖିବେ ରହନ୍ତୁ । ବାରଟା ବାଜିଯାଉ ।"

ଇତିମଧ୍ୟରେ ମୁଁ ମୋ ବନ୍ଧୁଙ୍କୁ ଉଠାଇ ସବୁକଥା କହିଲି । ରାତିର ଅନ୍ଧକାର ଓ ନିର୍ଜନତା ମଧ୍ୟରେ ଏଭଳି କାହାଣୀ ଶୁଣି

କାହର ବା ହୃତ୍‌କମ୍ପ ନ ହେବ । ଆମେ ଯେଉଁ ଚଟାଣ ଉପରେ ଶୋଇଛୁ ତା'ର ଇତିହାସ ଏପରି ରୋମାଞ୍ଚକର ଓ ଭୟାବହ ।

ବାରଟା ବାଜିବାଯାଏଁ ବସି ରହିଲୁ । ଟ୍ରେଜେରୀ ଘଣ୍ଟାରେ ଠଂ ଠଂ ହୋଇ ବାରଟା ବାଜିଲା । ମୋର ଛାତି ଥରି ଉଠିଲା । ସବୁ ଯୁକ୍ତି କୁଆଡ଼େ ଉଭେଇଗଲା । ପହିଲୁ ପହିଲୁ କୌଣସି ନୂତନ ଶବ୍ଦ ଲକ୍ଷ୍ୟ କରି ପାରିଲୁ ନାହିଁ । କିନ୍ତୁ ସିପାହୀଟି କହିଲା, 'ବାବୁ ଦେଖ, ହେଇ ଇଟା ପଡ଼ିଲା ।'' ଆମେ ଭୟରେ ଥରି ଥରି ପଚାରିଲୁ ''କ ହିଁ, କେଉଁଠି ? ଏସବୁ ତ କବାଟ ପିଟିହେଲା ଶବ୍ଦ ।''

''ନାଇଁ ବାବୁ, ଭଲଭାବେ ଶୁଣନ୍ତୁ ହେଇ ଏଇଟା କବାଟ ଶବ୍ଦ....କିନ୍ତୁ ଏଇ....ଏଇ....ଏଇଟା ଇଟା ପଡ଼ିବା ଶବ୍ଦ । ଦୁଇଟା ଶବ୍ଦରେ କେତେ ତଫାତ୍ ଦେଖିଲେ ?''

ସତକୁ ସତ ସେ ଯେଉଁ ଶବ୍ଦକୁ ଲକ୍ଷ୍ୟ କରି କହିଲା ତାହା ନୂତନ ପ୍ରକାରର, କବାଟ ପିଟି ହେବା ଶବ୍ଦ ନୁହେଁ । ମିନିଟିଏ, ଦି ମିନିଟ୍ ବ୍ୟବଧାନରେ ଏଭଳି ଶବ୍ଦ ଖୁବ୍ ଜୋରରେ ହେଉଥିଲା ବଡ ଇଟା ଖଣ୍ଡ ଭୂମି ଉପରେ ପଡ଼ିଲେ ଯେପରି ଶବ୍ଦ ହୁଏ ସେହିପରି ଶବ୍ଦ ହେବାକୁ ଲାଗିଲା । ସେ ଶବ୍ଦରେ ଯେପରି ବାରଣ୍ଡାର ଚଟାଣ କମ୍ପି ଉଠୁଥାଏ । ଏହାର କୌଣସି କାରଣ ଆବିଷ୍କାର କରି ପାରିଲୁ ନାହିଁ । ସିପାହୀ ଦୁଇଜଣ ସେତେବେଳକୁ ଡରି ଛାନିଆ ହୋଇ ପଡ଼ିଲେଣି । ଆମେ ମଧ୍ୟ ଯେତେ ସାହସ ଆଣିବାକୁ ଚେଷ୍ଟାକଲୁ ସେସବୁ କୁଆଡ଼େ ଉଭେଇଗଲା ।

ସପାହୀଟି କହିଲା, ''ବାବୁ, ସେ ପୋଖରୀ ସେ ପାଖରେ ଯେଉଁ ଘରଟି ଦିଶୁଛି ତାର ବାରଣ୍ଡାରେ ଚାଲନ୍ତୁ ଶୋଇବେ । ସେଠାରେ କିଛି ଭୟ ନାହିଁ ।''

ଆମେ ପୁତ୍ତଳିକାବତ୍ କାଖରେ ବିଛଣା ଧରି ସେଇଆଡ଼େ ଚାଲିଲୁ । ସେଠାରେ ଆମକୁ ଛାଡ଼ି ସିପାହୀ ଦୁଇଜଣ ଚାଲିଗଲେ । ବିଛଣା କଲୁ; କିନ୍ତୁ ଏକ ଅଭାବନୀୟ ଭୟରେ ଆମ୍ଭମାନଙ୍କର ସର୍ବାଙ୍ଗ ଥରୁଥାଏ । ଏମିତି କେତେବେଳ ଯାଏ ବିଛଣା ଉପରେ ପଡ଼ି ରହିଛୁ, ହଠାତ୍ ଖୁବ୍ ଜୋରରେ ଶବ୍ଦ ହେଲା । ଆମ୍ଭମାନଙ୍କର କର୍ଣ୍ଣର ଖୁବ୍ ନିକଟର ଏହି ଶବ୍ଦ ଶୁଭିଲା । ଏ ତ ମହର୍ଗରୁ ଆସି କାନ୍ତାରରେ ପଡ଼ିବା ଭଳି ହେଲା । ଭୂତଟା ବୋଧହୁଏ ଆମର ଅନୁସରଣ କରି ଏଠାକୁ ଆସିଛି ; କିନ୍ତୁ ଉଠିବାକୁ ଶକ୍ତି ନ ଥିଲା ଆମର । ଭୟ ଓ ଆଗତପ୍ରାୟ ବିପଦରେ ଆମ୍ଭେମାନେ ଏକାବେଳକେ ବିହ୍ୱଳ ହୋଇ ପଡ଼ିଲୁ । ଅନନ୍ୟୋପାୟ ହୋଇ ସେମିତି ପଡ଼ି ରହିଲୁ ।

ସକାଳ ହେବାରୁ ଦେଖିଲୁ ଆମ ଉପରେ ଗୋଟିଏ ଆଲମିରା କାଛକୁ ଡେରା ହୋଇ ରହିଛି । ଏଇ ଆଲମିରାଟି ଆମ ପାର୍ଶ୍ୱରେ ବାରଣ୍ଡା ଉପରେ ଥୁଆ ହୋଇଥିଲା । ପବନ ଜୋରରେ ଆମ ଉପରେ ପଡ଼ି କାଛରେ ଲାଗିଯାଇଛି । ରାତିରେ ଆମ କାନ ପାଖରେ ଯେଉଁ

ବଡ଼ ଶବ୍ଦ ହୋଇଥିଲା ତାହା ଏହା ପଡ଼ିବା ଫଳରେ ହୋଇଥିଲା । ସେତେବେଳେ ଆମେ ବୁଝିପାରିଲୁ ଯେ ସିପାହୀମାନଙ୍କ କଥା ଅନୁସାରେ ପ୍ରକୃତରେ ତାହା ନିରାପଦ ସ୍ଥଳ ।

ରାତିରେ ତ ଭୂତ ଯାହା କଲା କଲା ସକାଳ ହେବାରୁ ଆମର ସାହସ ଦେଖ । ପିଲା ଦିନରୁ ଯେଉଁ ଭୂତ ବିଷୟ କାହାଣୀ ଶୁଣିଥିଲୁ ଏବେ ତାକୁ ସତକୁ ସତ ଦେଖିଲୁ । ଭାଗ୍ୟବଶତଃ ତା' କବଳରୁ ରକ୍ଷା ପାଇ ଯାଇଛୁ । ବାବାରେ ! ପୁରୀଟେ ପ୍ରକୃତରେ ସବୁ ଭୂତକୋଠି ।

ତଥାପି ଦିନଯାକ ଲାଗି ସେ ଘରକୁ ପର୍ଯ୍ୟବେକ୍ଷଣ କଲୁ । ଦିନରେ ମଧ୍ୟ କବାଟ ଶବ୍ଦ ସେହିପରି ହୋହୋ ହେଉଥାଏ । କିନ୍ତୁ ଇଟା ପଡ଼ିବାର ଶୁଣି ପାରିଲୁ ନାହିଁ । ଦିବାଭାଗର ଯାବତୀୟ ଧ୍ୱନି ମଧ୍ୟରେ ଶବ୍ଦଗୁଡ଼ିକ ସ୍ପଷ୍ଟ ରୂପେ ଶୁଭୁ ନ ଥାଏ । ଦିନରେ ଭୂତ କୁଆଡ଼େ ଚାଲିଯାଉଛି । ରାତି ହେଲେ ବାହାରିବ ।

ଏପରି ଅନେକ କାଳ ଏପାଖ ସେପାଖ ହେବା ପରେ ଭୂତକୁ ଧରି ପାରିଲୁ । ଦେଖିଲୁ, ବାରଣ୍ଡାକୁ ଲାଗି ଗୋଟିଏ ପାର୍ଟିସନ୍ ଅଛି । ସେ ପାର୍ଟିସନରେ ଗୋଟିଏ କବାଟ ଲାଗିଛି । ପବନରେ କବାଟଟା କାଇଁ ଆଡ଼କୁ ଖୋଲି ହୋଇ ଯାଉଛି, ପୁଣି ବନ୍ଦ ହୋଇ ଯାଉଛି । ଥରେ ଥରେ ଯେତେବେଳେ ଖୁବ୍ ଜୋରରେ ପବନ କାଉଁରେ ଧକ୍କା ଖାଇ ଏପରି ଜୋରରେ କବାଟକୁ ପଛକୁ ଠେଲି ଆଣୁଛି ଯେ ପାର୍ଟିସନଟି ଭୂମି ଉପରେ ପ୍ରଚଣ୍ଡ ବେଗରେ ଦୁଲୁକି ଉଠୁଛି । ଏହାରି ଫଳରେ ବାରଣ୍ଡା ସାରା କମ୍ପି ଯାଉଛି ।

ଭୂତ ଧରା ପଡ଼ିଲେ ଆଉ ରହେ ନାହିଁ । ସେ ଦିନଠୁ ବିଶ୍ୱମ୍ଭର ବିଦ୍ୟାପୀଠ ଆଉ ଭୂତକୋଠି ହୋଇ ରହି ନାହିଁ । ସବୁ ଭୂତ ଆଜିକାଲି ସମୁଦ୍ର କୂଳରେ ପଇଁତରା ମାରୁଛନ୍ତି ।

---

# ପଞ୍ଚଗ୍ରହ କୂଟ

( ୧୯୬୪ ମସିହାରେ ହୋଇଥିବା ପଞ୍ଚଗ୍ରହକୂଟ ସମୟରେ ଲିଖିତ । )

ନିକଟରେ କଟକ ସହରରେ ଯେଉଁ ଉଲ୍‌କାପାତ ହେଲା ତା ସହିତ ସ୍ୱର୍ଗରୁ ଜଣେ ସାମ୍ବାଦିକ ଅବତରଣ କରିଥିଲେ । ତାଙ୍କରି ଠାରୁ ନିମ୍ନ ସମ୍ବାଦଟି ମିଳିଛି ।

ଜେନେଭାର ଚତୁଃଶକ୍ତି ସମ୍ମିଳନୀର ଠିକ୍ ପରେ ପରେ ସ୍ୱର୍ଗରେ ପଞ୍ଚଗ୍ରହକୂଟ ଆରମ୍ଭ ହୋଇଛି । ଦୀର୍ଘ ୧୬ ଦିନ କୂଟନୀତି ଚାଲିବ । ଏହି ସମ୍ମିଳନୀକୁ ବୃହସ୍ପତି, ଶୁକ୍ର, ଶନି, ମଙ୍ଗଳ ଓ ବୁଧ ଆସିଛନ୍ତି । ଏମାନଙ୍କ ମଧ୍ୟରେ ବୃହସ୍ପତି ସଭାପତି ରୂପେ ନିର୍ବାଚିତ ହୋଇଅଛନ୍ତି । ଶନି ଖୁବ୍ ଦୂରରୁ ଆସିଥିବାରୁ କ୍ଳାନ୍ତ ହୋଇ ପଡ଼ିଛନ୍ତି । ନ ହେଲେ ତାଙ୍କର ସଭାପତି ହେବା'ର କଥା ଥିଲା । ବୃହସ୍ପତିଙ୍କର ପୃଥୁଳ ବପୁ । ଖୁବ୍ ଶକ୍ତି ତାଙ୍କର, ଆଉ ଯେତେ ସବୁ ଆସିଛନ୍ତି ସେମାନେ ସମସ୍ତେ ମିଶିଲେ ବୃହସ୍ପତିଙ୍କର ଆକାର ସହିତ ସମାନ ହୋଇ ପାରିବେ ନାହିଁ । ପୃଥିବୀ ପାଖକୁ ନିମନ୍ତ୍ରଣ ଯାଇଥିଲା ; କିନ୍ତୁ ପୃଥିବୀ ଆସି ପାରି ନାହିଁ । ତେବେ ତାର ପ୍ରତିନିଧି ଶୁକ୍ର ଆସିଛନ୍ତି । ଏ ଯେଉଁ ସମ୍ମିଳନୀ ବସିଛି ଏହାର ପ୍ରଧାନ ଲକ୍ଷ୍ୟ ହେଉଛି ପୃଥିବୀର କିପରି ଶାନ୍ତି ସ୍ଥାପନ କରିବାକୁ ହେବ ତାହା ବିଚାର କରିବା । ପୃଥିବୀରେ କଳିଯୁଗ ଶେଷ କରି ସତ୍ୟଯୁଗ ପ୍ରତିଷ୍ଠା କରିବାକୁ ହେବ । ପୃଥିବୀର ଅଧିବାସୀମାନେ ଦିନକୁ ଦିନ ଅତିଶୟ ଉଗ୍ର ହୋଇଯାଉଛନ୍ତି । ପୃଥିବୀରେ ଯେଉଁ ଆଣବିକ ବିସ୍ଫୋରଣମାନ ହେଉଛି ସେଥିରେ ପୃଥିବୀ କଥା ଛାଡ଼, ଶୁକ୍ର ଓ ମଙ୍ଗଳ ମଧ୍ୟ ଥରହର ହେଲେଣି । ସେମାନଙ୍କର ଆଶା ଥିଲା ଯେ, ଜେନେଭା ସମ୍ମିଳନୀରେ ଏହାର ଗୋଟାଏ କିଛି ସମାଧାନ ହୋଇଯିବ ; କିନ୍ତୁ ତାର ଫଳାଫଳ ଆଶାଜନକ ନ ହେବାରୁ ଏ ପଞ୍ଚଗ୍ରହ ସମ୍ମିଳନୀର ଆବଶ୍ୟକତା ପଡ଼ିଲା ।

ସର୍ବପ୍ରଥମେ ମଙ୍ଗଳ ବୃହସ୍ପତିଙ୍କୁ ସଭାପତି ଆସନ ଗ୍ରହଣ କରିବାକୁ ଅନୁରୋଧ କଲେ । ବୁଧ ଏହାକୁ ଅନୁମୋଦନ କରିବାରୁ ବୃହସ୍ପତି ଆସନ ଗ୍ରହଣ କଲେ । ଆସନଟିରେ ନାନା ମଣିମାଣିକ୍ୟ ଖଚିତ ହୋଇଥାଏ । ଏହାର ପଶ୍ଚାତରେ ଏକ ବିରାଟ କର୍କଟ ବୃହସ୍ପତିଙ୍କର ଶରୀରରକ୍ଷୀ ହୋଇ ଦଣ୍ଡାୟମାନ ହେଲା (୧) । ସଭା କାର୍ଯ୍ୟ ଆରମ୍ଭ ହେଲା । ସେ କହିଲେ, 'ସଭାସଦ୍ ବର୍ଗ ! ଆମ୍ଭେମାନେ ଆଜି ଏଠାରେ କାହିଁକି ଏକତ୍ର ହୋଇଛେ; ତାହା ଆପଣମାନଙ୍କୁ ଅଗୋଚର ନାହିଁ । ଆମ୍ଭେମାନେ ସମସ୍ତେ ଆଜି ଏଠାକୁ ଆସିଛେ । ଆମ୍ଭର ଭଉଣୀ ପୃଥିବୀ ଏଠାକୁ ଆସିପାରି ନାହିଁ । ତାର ଅବସ୍ଥା ଶୋଚନୀୟ । ତାର ସନ୍ତାନମାନେ ନିଜ ନିଜ ମଧ୍ୟରେ କଳହରେ ବ୍ୟାପୃତ ରହି ଶେଷକୁ ତା'ର ବୁକୁରେ କୁଠାରାଘାତ କରୁଅଛନ୍ତି ।

(୧) ବର୍ତ୍ତମାନ ବୃହସ୍ପତି କର୍କଟ ରାଶିରେ ଅଛନ୍ତି ।

ସର୍ବଂସହା ପୃଥିବୀ ଆଉ କେତେଦିନ ସହିବ । ତାର ଦୁଃଖ ବିମୋଚନ କରିବା ନିମିତ୍ତ ଆପଣମାନଙ୍କୁ ପରାମର୍ଶ ଦେବାକୁ ମୁଁ ଆହ୍ବାନ କରୁଛି ।'

ବୁଧଦେବ ଉଠିଲେ । ତାଙ୍କର ଅଗ୍ରଭାଗ ସୂର୍ଯ୍ୟଭଳି ଉଜ୍ଜ୍ୱଳ ଦିଶୁଥାଏ । କିନ୍ତୁ ପଶ୍ଚାତଭାଗ ଗାଢ଼ କୃଷ୍ଣ ଅନ୍ଧକାର ଦ୍ୱାରା ଆବୃତ । ତାଙ୍କର ମୁହଁ, ଛାତି ପ୍ରଭୃତି ଖାଲି ଦାଉ ଦାଉ ହୋଇ ଜଳୁଥାଏ । ସେ ଉଠି ଭଗିନୀର ଦୁଃଖରେ କାନ୍ଦି ପକାଇ କହିଲେ, 'ଭାଇମାନେ । ମୁଁ ସୂର୍ଯ୍ୟଦେବଙ୍କ ଆଶ୍ରୟରେ ଥିବାରୁ ଆମର ଏହି ଅଧମ ଭଣଜାମାନେ ମୋର କୌଣସି କ୍ଷତି କରି ପାରିନାହାନ୍ତି । ପୃଥିବୀ ଯଦି ମୋର ନିକଟରେ ଥାଆନ୍ତା ତେବେ ସେମାନଙ୍କୁ ବାଟକୁ ଆଣିବାକୁ ମୁଁ ମୋର ଯଥାଶକ୍ତି ଚେଷ୍ଟା କରନ୍ତି । ଆମର ଭାଇ ଶୁକ୍ର ପୃଥିବୀର ଏତେ ପାଖରେ ଥାଇ ମଧ୍ୟ ସେଠାରେ ଏପରି ଘନଘଟା ରହିଛି । ଯା ଭିତରେ କେତେଥର ଆଣବିକ ବିସ୍ଫୋରଣ ହେବାର ଖବର ମୋ ପାଖରେ ଆସି ପହଞ୍ଚିଛି । ଏହି ବିସ୍ଫୋରଣ ଫଳରେ ଅସଂଖ୍ୟ ଜୀବ ମୃତ୍ୟୁ ମୁଖରେ ପଡ଼ିଛନ୍ତି । ଏଥିରୁ ବେଳେ ବେଳେ ଗୋଟିଏ ଗୋଟିଏ ଧାର ଉପରକୁ ଉଠି ଆସି ମହାଶୂନ୍ୟ ମଧ୍ୟରେ ମିଳାଇ ଯାଉଛି ସିନା, ମୋ ପାଖରେ ପହଞ୍ଚି ପାରିନାହିଁ । କିନ୍ତୁ ଏହାଦ୍ୱାରା ପୃଥିବୀର ଜୀବନୀଶକ୍ତି ଯେ ହ୍ରାସ ହୋଇ ଯାଉଛି, ଏଥିରେ ସନ୍ଦେହ ନାହିଁ । ଏମିତି ଯଦି ବରାବର ହୁଏ, ତେବେ ପୃଥିବୀର ମୃତ୍ୟୁ ନିଶ୍ଚୟ । ଆମ୍ଭେମାନେ ସମସ୍ତେ ବରଂ ଶୁକ୍ର ଓ ମଙ୍ଗଳଙ୍କ ଉପରେ ଏ ଦାୟିତ୍ୱ ଦେବା । ସେମାନେ ଭଉଣୀ ପାଖରେ ଅଛନ୍ତି ତ, ଏହାର ନିଶ୍ଚୟ ପ୍ରତିକାର କରିପାରିବେ ।

ଏତିକିବେଳେ ଶୁକ୍ରଦେବ ଉଠିଲେ । ତାଙ୍କର ଗୋଟିଏ ଆଖି ନ ଥାଏ । ଅନ୍ୟ ଆଖିଟିରେ ମିଞ୍ଜିମିଞ୍ଜି ରହୁଥାନ୍ତି । ତନୁ ଖୁବ୍ କୃଶ ହୋଇଯାଉଛି, ଦୁର୍ବଳ ମନେ ହେଉଛନ୍ତି । ସେ କହିଲେ, "ଭାଇମାନେ, ମୁଁ ମୋର କର୍ତ୍ତବ୍ୟ କରିନାହିଁ ବୋଲି ବୁଧ ମୋ ବିରୁଦ୍ଧରେ ଅଭିଯୋଗ ଆଣିଛି । ଭଉଣୀକୁ ରକ୍ଷା କରିବା ନିମିତ୍ତ ମୋର ଶକ୍ତି ଯେତିକି ତାହା ଅନୁସାରେ ମୁଁ ଖୁବ୍ ଚେଷ୍ଟା କରିଛି । ମୁଁ କେତେ ଉଡନ୍ତା ଥାଳିଆ ପୃଥିବୀ ପାଖକୁ ପଠାଇଛି ଓ ଏହା ସାହାଯ୍ୟରେ ପୃଥିବୀର ସନ୍ତାନମାନଙ୍କୁ ସତର୍କ କରି ଦେଇଛି ଆଣବିକ ବିସ୍ଫୋରଣର ପରିଣାମ କିପରି ଭୟାବହ ; କିନ୍ତୁ ସେଥିରେ ମଧ୍ୟ କିଛି ଫଳ ହେଲା ନାହିଁ । ମୋର କେତେ ସନ୍ତାନ ଏଥିପାଇଁ ପ୍ରାଣ ଦେଇ ନାହାନ୍ତି । ଯେଉଁମାନେ ଫେରି ଆସିପାରିଛନ୍ତି ସେମାନେ କହିଛନ୍ତି ଯେ, ପୃଥିବୀର ସନ୍ତାନମାନେ ଅତି ବିପଦଜନକ । ସେମାନେ ଦିନୁଦିନ ଅଧିକ ଉନ୍ମତ୍ତ ହେଉଛନ୍ତି । ସେମାନଙ୍କର ଏହି ଆଣବିକ ଅସ୍ତ୍ରର ପ୍ରଭାବ ମୋ ପର୍ଯ୍ୟନ୍ତ ଆସି ପହଞ୍ଚିଲାଣି । ଦେଖୁନାହଁ, ମୁଁ ଆଗେ କିପରି ଥିଲି ? ଏବେ କିପରି କୃଶ ହୋଇଗଲିଣି । ଏଇ ଭଣଜାମାନଙ୍କୁ ମୁଁ କେତେ ସ୍ନେହ କରୁ ନ ଥିଲି । ନିତି ସକାଳେ ଓ ସଞ୍ଜବେଳେ ଦେଖିବାକୁ ମୋ ମନ ଖାଲି ଉଛନ୍ନ ହେଉଥାଏ । ସେମାନେ ପୁଣି ଏପରି କୃତଘ୍ନ ଓ ଅବାଧ୍ୟ କିପରି ହେଲେ ମୁଁ ବୁଝି ପାରୁ ନାହିଁ । ସେମାନେ ନିଜେ ତ ଏହାର ଫଳ ଭୋଗିବେ । ଆମ ଭଉଣୀଟା ବିଚାରା ଛଟପଟ ହୋଇ ମରିଯିବ । ଶେଷରେ ଆମର ଦଶା କଅଣ ହେବ କିଏ ଜାଣେ ।"

ସଭାପତି ମଙ୍ଗଳଙ୍କୁ କିଛି କହିବା ନିମିତ୍ତ ଆହ୍ୱାନ କଲେ । ମଙ୍ଗଳ ଦେଖିବାକୁ ବେଶ୍ ସୁନ୍ଦର । ବର୍ଣ୍ଣ ଲାଲ୍ । ଆଖିରୁ ଜ୍ୟୋତି ବାହାରୁଥାଏ । ସେ ଠିଆ ହୋଇ କହିବାକୁ ଆରମ୍ଭ କଲେ, "ଏ ସବୁ ଘଟଣାରୁ ମୋର ସନ୍ଦେହ ହେଉଛି ଯେ, ଆମରି ଭିତରେ କେହି ପ୍ରତିକ୍ରିୟାଶୀଳ ବ୍ୟକ୍ତି ପୃଥିବୀ ପ୍ରତି ଶତ୍ରୁତା ଆଚରଣ କରି ଏପରି କରୁଛି । ପୃଥିବୀ ଓ ଶନି ମଧ୍ୟରେ ଭଲ ପଡ଼େ ନା । ମୋର ମନେ ହେଉଛି ରବି ହେଉଛି ଏ ନାଟର ଗୋବର୍ଦ୍ଧନ । ପୃଥିବୀର ସନ୍ତାନମାନେ ଆଗେ ତ ଖୁବ୍ ନିରୀହ ଓ ଅହିଂସାପ୍ରିୟ ଥିଲେ । ଏବେ ଖାଲି ହତ୍ୟାକାଣ୍ଡ, ବିଦ୍ରୋହ ଓ ରକ୍ତପାତ ଲାଗିଛି ।

ମଙ୍ଗଳଙ୍କର କଥା ଶୁଣି ଶନିଦେବ ଉଠିବାକୁ ବାଧ୍ୟ ହେଲେ । ସେ ଅନେକ ବାଟରୁ ଆସିଥିବାରୁ ହାତରେ ଗୋଟିଏ ଦାନ୍ତୁଆ ଦାଆ ଧରିଥିଲେ । ଏହି ଦାଆ ହେଉଛି ଶନିଙ୍କର ରାଜଦଣ୍ଡ । ତାଙ୍କର ପଶ୍ଚାତରେ ନିକିତି ଆକାରରେ ସଜ୍ଜିତ ହୋଇ (୨) କେତେଗୁଡ଼ିଏ ତାରକା ଦିଶୁଥିଲେ । ସେ କହିଲେ, "ବନ୍ଧୁଗଣ, ମୋତେ ଆପଣମାନେ ଭୁଲ ବୁଝିଥିବାର ଦେଖି ମୁଁ ବିଶେଷ ଦୁଃଖିତ । ଏହି ବିଶ୍ୱବ୍ରହ୍ମାଣ୍ଡରେ ଆମ୍ଭେମାନେ ସମସ୍ତେ ଭାଇ ଭଉଣୀ ଭଳି ବାସ କରିଛେ । ସେତ ହେଲେ ପୃଥିବୀ ଆମର ଭଉଣୀ । ଅବଶ୍ୟ ତାର ସନ୍ତାନମାନଙ୍କ ସହିତ ସମୟେ ସମୟେ ଲାଗିବାକୁ ମୁଁ ଭଲପାଏ । ଯେତେବେଳେ ପୃଥିବୀ ଉପରେ ବିପଦ ପଡ଼ିଲାଣି, ମୁଁ ମୋର ପୂର୍ବ ପ୍ରକୃତି ପରିହାର କରିବାକୁ ବାଧ୍ୟ ହୋଇଛି । ମୋ ମତରେ ପୃଥିବୀର ସନ୍ତାନମାନଙ୍କୁ ଧ୍ୱଂସ କରି ନ ଦେଲେ ପୃଥିବୀ ନିଜେ ବଞ୍ଚି ପାରିବ ନାହିଁ । ପୃଥିବୀରେ ଏଥି-ଭିତରେ ଯେଉଁ ଜେନେଭା ସମ୍ମିଳନୀ ହେଲା ତାର ଫଳାଫଳ ପାଇଁ ମଧ୍ୟ ବିଶେଷ ଉଦ୍‌ବିଗ୍ନ ଥିଲି । ମୁଁ ଛଦ୍ମବେଶରେ ଯାଇ ସେଠାର ହାଲ ନିଜେ ଦେଖି ଆସିଛି । ଏ ଗୋଟାଏ ପ୍ରହସନ ମାତ୍ର । ତା'ପରେ ପୁଣି ପରମାଣୁ ବୋମା ନିର୍ମାଣ ଚାଲିଛି, ବିସ୍ଫୋରଣ ପାଇଁ ଆୟୋଜନ ମଧ୍ୟ ବନ୍ଦ ହୋଇ ନାହିଁ । ଏତେବେଳେ ଏହି ଭଣ୍ଡାମାନଙ୍କୁ ସମୂଳେ ନାଶ ନ କଲେ ତା'ର ଫଳ ଆମକୁ ମଧ୍ୟ ଭୋଗ କରିବାକୁ ପଡ଼ିପାରେ । ପୃଥିବୀର ସନ୍ତାନମାନଙ୍କର ବୁଦ୍ଧି ପାଇଁ ଆମେ ଗର୍ବ ଅନୁଭବ କରୁଛୁ । ସେମାନେ ଯେ ଏପରି ଏକ ଗୁପ୍ତ ଶକ୍ତିର ସନ୍ଧାନ ପାଇଛନ୍ତି ସେଥିପାଇଁ ଧନ୍ୟବାଦାର୍ହ । କିନ୍ତୁ ସେହି ଶକ୍ତିର ଉପଯୁକ୍ତ ପ୍ରୟୋଗ କରିପାରିଲେ ସିନା ସେମାନଙ୍କର ବୁଦ୍ଧିର ପରିଚୟ ମିଳିବ । ଏପରି ଆତ୍ମଘାତୀ ହେଉଛନ୍ତି କାହିଁକି ? ଯେଉଁ ବ୍ୟକ୍ତି ଏହି ତତ୍ତ୍ୱକୁ ଉଦ୍‌ଭାବନ କରିଛନ୍ତି ତାଙ୍କୁ ମଧ୍ୟ ଆମେ ଉପଯୁକ୍ତ ସମ୍ମାନ ଦେଉଛୁ । ସେ ଆଜି ପୃଥିବୀ ଛାଡ଼ି ସ୍ୱର୍ଗରେ ନକ୍ଷତ୍ର ହୋଇ ରହିଅଛନ୍ତି । ତାଙ୍କୁହିଁ ଆମେ ପରାମର୍ଶ କରିବା । ମୁଁ ସଭାପତିଙ୍କୁ ଅନୁରୋଧ କରୁଛି, ସେ ସେହି ନକ୍ଷତ୍ରଙ୍କୁ ଆହ୍ୱାନ କରନ୍ତୁ ।"

ଶନିଙ୍କର କଥା ବୃହସ୍ପତିଙ୍କର ମନକୁ ପାଇଲା । ସେ ତାଙ୍କ ସମ୍ମୁଖରେ ଥିବା ଘଣ୍ଟି ବଜାଇଦେବା ମାତ୍ରେ ହାବେଳି ବାଣ ଭଳି ଗୋଟିଏ ଧୂମକେତୁ ହାଜର ହୋଇଗଲା । ତାର ଗୋଟିଏ ମୁଣ୍ଡ ଓ ଗୋଟିଏ ଲାଞ୍ଜ ଥାଏ । ବୃହସ୍ପତି ତାଙ୍କୁ କଅଣ ଆଦେଶ ଦେବାରୁ ସେ

(୨) ଶନି ତୁଳାରାଶିରେ ଅଛନ୍ତି ।

ମୁଣ୍ଡ ବୁଲାଇ ତତ୍କ୍ଷଣାତ୍ ଚାଲିଗଲା । କିୟତ୍ ସମୟ ପରେ ଏକ ଜ୍ୟୋତିର୍ମୟ ବ୍ୟକ୍ତି ଆବିର୍ଭୂତ ହେଲେ ।

ଏ ହେଉଛନ୍ତି ବୈଜ୍ଞାନିକ ଆଇନ୍‌ଷ୍ଟେନ୍ । ସେ ବୃହସ୍ପତିଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ କହିଲେ, "ମହାଭାଗ, ପୃଥିବୀବାସୀଙ୍କୁ ଆଣବିକ ତତ୍ତ୍ୱ ସନ୍ଧାନ ଦେଇଥିବାରୁ ମୁଁ ଆଜି ଅନୁତପ୍ତ । ମୁଁ ଯଦି ଜାଣିଥାଆନ୍ତି ଯେ ସେମାନେ ଏହାର ଏପରି ଅପପ୍ରୟୋଗ କରିବେ ମୁଁ କଦାପି ଏ ରହସ୍ୟ ଉଦ୍‌ଘାଟନ କରି ନ ଥାନ୍ତି । ତେବେ ମୁଁ ପୃଥିବୀ ତ୍ୟାଗ କରିବା ପୂର୍ବରୁ ସତର୍କ କରିଦେଇ ଆସିଛି ଏହି ବିସ୍ଫୋରଣ ଫଳରେ ପୃଥିବୀରୁ କିପରି ଜୀବନ ଲୋପ ପାଇଯିବ । ଏ ବିଷୟରେ ଅଧିକ ପରାମର୍ଶ ଦେବାକୁ ମୁଁ ମୋର ଅକ୍ଷମତା ପ୍ରକାଶ କରୁଛି ।"

ଗ୍ରହମାନଙ୍କ ମଧ୍ୟରେ ବଡ ଭାଳେଣି ପଡିଲା । କିପରି ଭାବରେ ପୃଥିବୀର ଲୋକମାନଙ୍କୁ ସାଧ୍ୟ କରିବାକୁ ହେବ । ସମସ୍ତେ ନିଜ ନିଜର ଭାଷଣ ଦେଇ ସାରିଲେଣି । ବର୍ତ୍ତମାନ ସଭାପତି ନିଜର ବକ୍ତବ୍ୟ ଆରମ୍ଭ କରିବାର କଥା । ବୃହସ୍ପତି ଉଠି ଠିଆହେଲେ । କରତାଳିରେ ସଭାଗୃହ କମ୍ପିଗଲା । ସେ ତାଙ୍କର ଭାଷଣ ଆରମ୍ଭ କଲେ, 'ସଭାସଦ୍ ବର୍ଗ, ଆପଣମାନଙ୍କ ମଧ୍ୟରୁ ପ୍ରତ୍ୟେକର ମତାମତ ମୁଁ ଖୁବ୍ ମନୋଯୋଗ ସହକାରେ ଅନୁଧ୍ୟାନ କରି ଆସିଛି । ମୋର ମନେହୁଏ ଆମର ବର୍ତ୍ତମାନ ଏକାନ୍ତ କର୍ତ୍ତବ୍ୟ ହେଉଛି ଆମର ଭଗିନୀକୁ ବଞ୍ଚାଇବା । ତାର ସନ୍ତାନମାନେ ମରନ୍ତୁ ପଛକେ ଭଉଣୀ ବଞ୍ଚିଯାଉ । ସେଥିପାଇଁ ମୁଁ ଏକ ଉପାୟ ମଧ୍ୟ ସ୍ଥିର କରିଛି । ଆମେ ଆମର ଏହି ଚର ଧୂମକେତୁକୁ ଓ ଉଲ୍‌କାମାନଙ୍କୁ ପୃଥିବୀକୁ ପ୍ରେରଣ କରିବା । ସେମାନେ ଯାଇଁ ପହିଲୁ ପୃଥିବୀବାସୀଙ୍କୁ ଭସ୍ମ କରି ପକାନ୍ତୁ । ଏଥିରେ ଯଦି ସେମାନଙ୍କର ବୁଦ୍ଧି ନ ଆସେ ତାହେଲେ ଆମ୍ଭେମାନେ ସମସ୍ତେ ଯାଇଁ ଇନ୍ଦ୍ରଦେବ ଓ ସୂର୍ଯ୍ୟଦେବଙ୍କ ପାଖରେ ଗୁହାରି କରିବା । ସୂର୍ଯ୍ୟଦେବ ନାଳ, ନଈ ଓ ପୋଖରୀର ପାଣି ଶୋଷି ଶୁଖାଇ ଦେବେ । ଇନ୍ଦ୍ରଦେବ ବୃଷ୍ଟି ବନ୍ଦ କରିଦେବେ । ମଡ଼କ, ଦୁର୍ଭିକ୍ଷ ଓ ରୋଗରେ ପୃଥିବୀବାସୀ ଛଟପଟ ହୋଇ ମରିଯିବେ । ପୃଥିବୀରୁ ପ୍ରାଣୀ ନିଶ୍ଚିହ୍ନ ହୋଇଯିବେ । ତା'ପରେ ସତ୍ୟଯୁଗର ମୂଳଦୁଆ ଦିଆଯିବ । ବିଷ୍ଣୁ ପୁନର୍ବାର ତାଙ୍କର ସୃଷ୍ଟି ଆରମ୍ଭ କରିବେ । ଆଜି ଆମେ ଏହି ଚର ବୃନ୍ଦଙ୍କୁ ପୃଥିବୀକୁ ପଠାଇବା । ପୁଣି ଦଶଦିନ ପରେ ଏଠାରେ ପୁଣି ଏ ପଞ୍ଚଗ୍ରହ ସମ୍ମିଳନୀ ବସିବ । ଧୂମକେତୁ ଓ ଉଲ୍‌କାମାନଙ୍କର ରିପୋର୍ଟ ସେତେବେଳେ ବିଚାର କରାଯିବ ।

ବୃହସ୍ପତିଙ୍କର କଥାରେ ଗ୍ରହମାନେ ଖୁସି ହୋଇ ପୁଣି ତାଳି ବଜାଇଲେ । ଧୂମକେତୁ ଓ ଉଲ୍‌କାମାନେ ଆଦେଶ ପାଇ ଦଳ ଦଳ ହୋଇ ଚାରିଆଡେ ଉଡି ଚାଲିଗଲେ ।

ନିକଟରେ ସିଂହ ରାଶିରେ ଯେଉଁ ଧୂମକେତୁ ଦେଖାଯାଇଥିବା ବିଷୟ ସମ୍ବାଦପତ୍ର ମାନଙ୍କରେ ପ୍ରକାଶ ପାଇଥିଲା, ଏ ସେମାନଙ୍କ ମଧ୍ୟରୁ ଗୋଟିଏ ।

# ସ୍ୱାଧୀନ ଭାରତର ଗୋଟିଏ ସନ୍ଧ୍ୟା

ଦୁଇଟି କିଶୋରୀ । କେତେବେଳୁ ସେମାନେ ଠିଆ ହୋଇ ରହିଲେଣି, ସଭାପତି ଓ ପ୍ରଧାନ ବକ୍ତାଙ୍କ ବେକରେ କର୍ପୂରମାଳ ପକାଇବେ । କିନ୍ତୁ ସଭାପତି ସମ୍ପାଦକଙ୍କ ସହିତ କଥା କହିବାରେ ବ୍ୟସ୍ତ । ସେଥିପାଇଁ ଝିଅ ଦୁଇଟି ଲାଜରେ ସଜି ଗଲେଣି । ହାତରେ ମାଳା ଧରିଛନ୍ତି । ସମସ୍ତଙ୍କର ଆଖି ଏଇ ଦୁଇଟି ଝିଅଙ୍କ ଉପରେ । ଅଥଚ ସଭାପତି ପ୍ରସ୍ତୁତ ହେଉ ନାହାନ୍ତି ମାଳା ଗ୍ରହଣ କରିବାକୁ । କେତେଥର ସେମାନେ ଲାଜରେ ହସିପକାଇ ତଳକୁ ମୁହଁ କରି ପୁଣି ସଭାପତିଙ୍କ ମୁହଁକୁ ଚାହୁଁଥାନ୍ତି । କିନ୍ତୁ ସଭାପତିଙ୍କର ଭ୍ରୂକ୍ଷେପ ନାହିଁ ସେ ଆଡକୁ । ଆଉ ସମ୍ଭାଳି ହେଲା ନାହିଁ । ଶେଷକୁ ଖୁବ୍ ସାହସ କରି ସଭାପତି ଓ ପ୍ରଧାନ ବକ୍ତାଙ୍କ ବେକରେ ମାଳା ଲମ୍ବାଇ ଦେଲେ । ସଭାପତି ଟିକିଏ ଅପ୍ରସ୍ତୁତ ହେବା ପରି ବୋଧହେଲା ।

ଏ ସମୟରେ ହଠାତ୍ ବେତାର ଶିଳ୍ପୀ କିଶୋର ସଙ୍ଗୀତ ଆରମ୍ଭ କରିଦେଲେ । ପ୍ରଳୟ ପୟୋଧି ଜଳେ ଧୃତ ବାନସିବେଦଂ ।

ବାହାରେ ଝିପି ଝିପି ବର୍ଷା ହେଉଛି । ଉଚ୍ଚ ଇଂରାଜୀ ବିଦ୍ୟାଳୟର ଦୀର୍ଘ ଅଧ୍ୟାପନାଗାର ଲୋକରେ ଭରପୂର । ଘରର ଦୁଇ ତିନୋଟି ଝରକା ବନ୍ଧ ଉପରେ ପେଟ୍ରୋମାକ୍ସ ଆଲୁଅ ରହିଛି । ସାଂସ୍କୃତିକ ସମିତି ତରଫରୁ ଏ ସଭାର ଆୟୋଜନ । ଅଧ୍ୟାପକ ମହାପାତ୍ର "ସାହିତ୍ୟ ଓ ସଂସ୍କୃତି" ଉପରେ ଭାଷଣ ଦେବେ । ଗତ ପଦର ଦିନ ହେଲା ଲାଗିଛନ୍ତି ସାମଗ୍ରୀ ସଂଗ୍ରହ କରିବା ପାଇଁ । ଆରମ୍ଭ ସଙ୍ଗୀତ ସରିଲା । ସମ୍ପାଦକ ଗତ ଅଧିବେଶନର ବିବରଣୀ ପାଠ କଲେ । ସଭାପତି ପ୍ରଧାନ ବକ୍ତାଙ୍କ ପରିଚୟ ଦେଇ କହିଲେ, "ଅଧ୍ୟାପକ ମହାପାତ୍ରଙ୍କର ପରିଚୟ ଦେବା ମୋର ଧୃଷ୍ଟତା ମାତ୍ର । ମୋ ଅପେକ୍ଷା ଆପଣମାନେ ତାଙ୍କ ବିଷୟରେ ଅଧିକ ଜଣନ୍ତି । ତେଣୁ ମୁଁ ଏତିକିରେ ଅଧ୍ୟାଏକ ମହାପାତ୍ରଙ୍କୁ ତାଙ୍କର ଆବେଗମୟ ଭାଷଣ ଆରମ୍ଭ କରିବାକୁ ଅନୁରୋଧ କରୁଛି ।"

ଅଧ୍ୟାପକ ଭାଷଣ ଆରମ୍ଭ କଲେ । ପ୍ରଥମେ ସେ କାର୍ଯ୍ୟକାରୀ ସମିତିର ସଭ୍ୟମାନଙ୍କୁ ଧନ୍ୟବାଦ ଜଣାଇଲେ, କାରଣ ଏଭଳି ସାଂସ୍କୃତିକ ସମିତିରେ ତାଙ୍କୁ ବକ୍ତା ରୂପେ ନିର୍ବାଚନ କରିଥିବାରୁ ସେ ନିଜକୁ ସମ୍ମାନିତ ମନେ କରୁଛନ୍ତି ।

ଶ୍ରୋତାମାନଙ୍କ ମଧ୍ୟରୁ ମୁଁ ଜଣେ । ମୋ ଆଗରେ ତିନି, ଚାରିଜଣ ବାଳିକା । ପ୍ରତ୍ୟେକଙ୍କର ବୟସ ସାତ ଆଠ ବର୍ଷ ଭିତରେ ହେବ । ପ୍ରତ୍ୟେକଙ୍କର ପଛଆଡେ ବେଣୀ ଝୁଲୁଥାଏ । ବେଣୀ କିଆଫୁଲ, ମଲ୍ଲୀଫୁଲରେ ସଜ୍ଜିତ । ଜଣେ ବାଳିକା ଆଉ ଜଣକର ପଛରେ ବସି କେତୋଟି ଚମ୍ପା ଫୁଲ ଖୋସୁଛି ଏବଂ ମଝିରେ ମଝିରେ ସଭାପତି ଓ

ବକ୍ତାଙ୍କ ଆଡକୁ ମୁହଁ ବୁଲାଇ ରହୁଛନ୍ତି ମାତ୍ର । ମୋର ପଛଆଡେ ଦୁଇଜଣ ଭଦ୍ରଲୋକ । ଭାଷଣ ଶୁଣିବାକୁ ସେମାନେ ଆସିଛନ୍ତି । କିନ୍ତୁ ଭାଷଣ ଆରମ୍ଭ ହୋଇଗଲାଣି ଏହା ବୋଧହୁଏ ଜାଣି ନାହାନ୍ତି । ସେଥିପାଇଁ ନିଜ ନିଜ ଭିତରେ କଥାବାର୍ତ୍ତାରେ ନିମଗ୍ନିତ ରହିଛନ୍ତି ।

ପ୍ରଧାନ ବକ୍ତା କହିବାକୁ ଆରମ୍ଭ କଲେ, "ଆଜିକାର ମୋର ବିଷୟବସ୍ତୁ 'ସଂସ୍କୃତି ଓ ସାହିତ୍ୟ' । ଏ ବିଷୟର ସୀମା ଅସୀମ । ଏ ବିଷୟରେ କହିବା ଯେତେ କଷ୍ଟକର ସେତେ ସହଜ ମଧ୍ୟ । ମୋର କ୍ଷୁଦ୍ର ଜ୍ଞାନରେ ମୁଁ ଆପଣମାନଙ୍କୁ ଦି' ଚାରିପଦ କହି ଏଠାକୁ ଫାଙ୍କିବାକୁ ଆସିଛି ।"

ମୋ ପଛରେ ବସିଥିବା ଦୁଇଜଣ ଭଦ୍ର ଲୋକଙ୍କର କଥାବାର୍ତ୍ତା - ମୋତେ ପରିଷ୍କାର ଶୁଭୁଥାଏ । ମୋର କାନ ବେଳେ ବେଳେ ସେମାନଙ୍କ ଆଡେ ଓ ବେଳେ ବେଳେ ବକ୍ତାଙ୍କ ଆଡେ ଥାଏ । ସେମାନଙ୍କର କଥାବାର୍ତ୍ତାରୁ ମୁଁ ବୁଝି ପରିଲି ସେମାନେ ସରକାରଙ୍କୁ ଗାଳି ଦେବାରେ ଲାଗିଛନ୍ତି ।

"ବିଦେଶୀ ବାଘ ଦେଶୀ ବାଘ ଠାରୁ ଶତ ଗୁଣରେ ଭଲ । ଦେଶୀ ବାଘ ସିନା ବୁଦା,କନ୍ଦି,ଛକ ସବୁ ଚିହ୍ନି ରଖିଥାଏ ଯେ କେଉଁ ରାସ୍ତାରେ ବସିଲେ ଶିକାରକୁ ଅକ୍ଲେଶରେ ମାଡିବସି ପାରିବ ତ କୁ ଜଣାଥାଏ । କିନ୍ତୁ ବିଦେଶୀ ବାଘକୁ ସବୁ ଜାଗା ନୂଆ । ସେ ଏତେ ସହଜରେ ଶିକାର କରି ପାରିବ ନାହିଁ । ଉପାସରେ ମରିଯିବ । ଦେଖୁ ନାହଁ, ସେଇଥି ପାଇଁ ବ୍ରିଟିଶ ସରକାର ଭାରତ ଛାଡି ଚାଲିଗଲା । କିନ୍ତୁ ଆମେ ବୁଝୁଛୁ ଯେ ବ୍ରିଟିଶ ସରକାର ଅମଳରେ ଆମେ ଖୁବ୍ ଭଲଥିଲୁ । ଏ ସରକାର ଆମର ଲୋଡା ନାହିଁ ।

ଏଣେ ବକ୍ତା କହି ଚାଲିଥାନ୍ତି, ଇଂରାଜୀ ଓ ସଂସ୍କୃତ ପଂକ୍ତିମାନ ଉଦ୍ଧାର କରି ବୁଝାଇବାରେ ଲାଗିଛନ୍ତି, ଏ ସଂସ୍କୃତି କିଭଳି ବିରାଟ । ଗୋଟିଏ ଦେଶର ସଂସ୍କୃତି ଓ ସାହିତ୍ୟ ସ୍ୱତନ୍ତ୍ର ଭାବେ ଗଢି ଉଠିହେବ ନାହିଁ । ଏହାର ବିସ୍ତୃତି ବ୍ୟାପକ । ଅନ୍ୟ ଦେଶର ସଂସ୍କୃତିର ପ୍ରଭାବ ପଡିବ ହିଁ ପଡିବ ।

ମୋ ପଛରେ କଥାର ସୁଅ ବଢି ଚାଲିଥାଏ । "ଏଭଳି ଅନ୍ୟାୟ କିଏ ଚୁପ୍ ହୋଇ ସହିବ । ମୋ ଠାରୁ ଜୁନିଅର ଲୋକ ସେ । ସେ ପ୍ରମୋସନ ପାଇଲା, ଅଥଚ ମୁଁ ପାଇ ପାରିଲି ନାହିଁ । ମୋର ଗୋଟିଏ ଦୋଷ ଯେ ସାଇବ ଯେତେବେଳେ କଟକ ଯାଆନ୍ତି ମୁଁ ତାଙ୍କୁ ବାଟେଇ ଦେବାପାଇଁ ଷ୍ଟେସନକୁ ଯାଇ ନ ଥାଏ । ଆଗରୁ ମୋର ଏପରି ଧାରଣା ନଥିଲା । ମୁଁ ତ ଅଫିସ କାମ ସାରି ଘରକୁ ଚାଲିଆସେ । ଅନ୍ୟମାନେ କେତେବେଳେ ଯାଇ ଷ୍ଟେସନରେ ହାଜର ହୋଇଯାଆନ୍ତି ମୋତେ ତାହା ମାଲୁମ ନଥାଏ ଏବେ ସିନା ମୁଁ ସେ କଥା ଜାଣିଲି । ଏ ସ୍ୱାଧୀନ ଦେଶରେ ରାଜାରାଜୁଡା ତ ଗଲେଣି । କିନ୍ତୁ ତାଙ୍କ ସ୍ଥାନରେ ଏମାନେ ରାଜାରାଜୁଡାଙ୍କ ଆସନ ମାଡି ବସିଛନ୍ତି । ଏ କି ସ୍ୱାଧୀନତା ।"

ମୁଁ ମନେ ମନେ ଭାବିଲି, କି ନିର୍ବୋଧ ଏ ଲୋକ ଦୁଇଟି । କେତେ ସଂଗ୍ରାମ ପରେ ସ୍ୱାଧୀନତା ମିଳିଛି । ସ୍ୱାଧୀନତା ପ୍ରାପ୍ତିର

ପରେ ପରେ ହଠାତ୍ ଦେଶରେ ନିରପେକ୍ଷ ଶାସନ ଆଶା କରିବା ଅସଙ୍ଗତ ନୁହେଁ କି ?

ବକ୍ତାଙ୍କର ଭାଷଣ ମୋ କାନରେ ବାଜିଲା । "ଏ ଦୁଇ ଶତ ବର୍ଷ ଧରି ବ୍ରିଟିଶ ସରକାର ଆମର ସାହିତ୍ୟ, ଆମର ସଂସ୍କୃତିକୁ ଦବାଇ ଦବାକୁ ଚେଷ୍ଟା କରି ଆସିବା ସତ୍ତ୍ୱେ ଏ ସଂସ୍କୃତି ସେଭଳି ଅକ୍ଷୁଣ୍ଣ ହୋଇ ରହିଛି ।

ପଛରୁ କଥା ଶୁଭିଲା । "ଦେଶ ସ୍ୱାଧୀନ ହେଲା, ଏତା ସମସ୍ତେ କହୁଛନ୍ତି । ସ୍ୱାଧୀନତା ଦିବସ ପାଳନ ହେଉଛି । ଯେଉଁମାନେ ସ୍ୱାଧୀନତା ପାଇଁ ପ୍ରାଣବଳି ଦେଇଛନ୍ତି ସେମାନେ ନମସ୍ୟ । କିନ୍ତୁ ସେମାନଙ୍କର ବଂଶଧରମାନେ କ'ଣ କରୁଛନ୍ତି । ସରକାର କଥା ଛାଡ । ଏ ଲୋକଙ୍କୁ ଦେଖୁ ନାହିଁ । ଯିଏ ଯାହା ଇଛା ତାହା କରୁଛି, ଅଥଚ କିଛି ପ୍ରତିକାର ହୋଇ ପାରୁନି । ରିକ୍ସାବାଲା କହୁଛି, ମୁଁ ଆଜି ସ୍ୱାଧୀନ ମୁଁ ଯାହା ଭଡା ମାଗୁଛି ଦେଇ ପାରିବ ତ ମୋ ରିକସାରେ ବସ ନଚେତ ନେବି ନାହିଁ । ଷ୍ଟେସନରେ କୁଲି କହୁଛି, ବାବୁ ବ୍ରିଟିଶ ସରକାର ଅମଳରେ ସିନା ଗାଡିରୁ ପ୍ଲାଟଫର୍ମ ବାହାରକୁ ନେବାକୁ ଦି ଅଣା ଥିଲା । ଆଜି ସ୍ୱାଧୀନ ଦେଶ । ମୁଁ ଯାହା କହିବି ତମକୁ ଦେବାକୁ ହେବ । ନଚେତ ନିଜେ ମୁଣ୍ଡରେ ମୁଣ୍ଡାଇ ନିଅ । ଦୋକାନୀକୁ ଯଦି ପଚାରିବ, କିହୋ ଜିଲେଟ୍ ରେଜରର ଦାମ ତ ଦେଢ ଟଙ୍କା ଲେଖା ହୋଇଛି, ତମେ କାହିଁକି ଅଢେଇ ଟଙ୍କା ମାଗୁଛ । ଦୋକାନୀ କହିବ, ବାବୁ ନେଲେ ନିଅ ନ ହେଲେ ଆମେ ତମକୁ ବାଧ୍ୟ କରୁ ନାହୁଁ । ଏ କ'ଣ ବ୍ରିଟିଶ ଅମଳ ହୋଇଛି କି ?"

ଅନ୍ୟ ଜଣକ କହିଲା, "ହଁ ଭାଇ ସେଇଆ ତ ସବୁ କ୍ଷେତ୍ରରେ ଚାଲିଛି । ସ୍ୱାଧୀନତାର ଅର୍ଥ କ'ଣ ଲୋକେ ବୁଝି ନାହାନ୍ତି । ସେମାନଙ୍କ ମତରେ ସ୍ୱାଧୀନତାର ଅର୍ଥ ହେଉଛି ଯିଏ ଯାହା ଇଛା ତାହା କରି ପାରିବ । ତାକୁ କେହି ରୋକି ପାରିବେ ନାହିଁ । ଦେଖୁନା ! ମିଲିଟେରି ପୋଲିସ ରାତିସାରା ପହରା ଦେଉଛନ୍ତି । ସେ ବୁଢୀଟାକୁ କିଏ ଘର ଭିତରେ ମାରି ପୁଣି ରାସ୍ତାରେ ପକାଇ ଦେଇଗଲା, ଅଥଚ ପୋଲିସ ଜାଣି ପାରିଲା ନାହିଁ କି ହତ୍ୟାକାରୀର ସନ୍ଧାନ ମିଳିଲା ନାହିଁ ।"

ବକ୍ତାଙ୍କର ସ୍ୱର ଟିକିଏ ଉଚ୍ଚ ହେବାରୁ ସେଆଡକୁ କାନ ଡେରିଲି । ସେ କହି ଚାଲିଥାନ୍ତି, "ମୁଁ କହିବି ଆମର ଭାରତୀୟ ସଂସ୍କୃତି ପାଶ୍ଚାତ୍ୟ ସଂସ୍କୃତିର ଯଥେଷ୍ଟ ଉଚ୍ଚରେ । ପାଶ୍ଚାତ୍ୟରେ ଯିଶୁ କ୍ରୁଶବିଦ୍ଧ ହୋଇଛନ୍ତି । ଯେତେ ନୂଆ ନୂଆ ଧର୍ମର ଅଭ୍ୟୁଦୟ ହୋଇଛି ତାର ପ୍ରଚାରକମାନେ ଶାସ୍ତି ପାଇଛନ୍ତି । ଜିଆର୍ଡୋ ବ୍ରୁନୋଙ୍କୁ ଜିଅନ୍ତା ନିଆଁରେ ପୋଡି ମାରି ଦିଆଯାଇଛି । କାରଣ ସେ କହିଲେ ଆମ ପୃଥିବୀ ଭଳି ଆହୁରି ଅନେକ ପୃଥିବୀ ଏ ବିଶ୍ୱବ୍ରହ୍ମାଣ୍ଡରେ ତିଷ୍ଠି ରହିଛି ଓ ଏଗୁଡିକ ସମସ୍ତେ ସୂର୍ଯ୍ୟ ଚାରିପାଖରେ ପରିଭ୍ରମଣ କରୁଛନ୍ତି । କିନ୍ତୁ ଆମର ଭାରତୀୟ ସଂସ୍କୃତି ସେପରି କରିବାକୁ ଦେଇନାହିଁ । ବୁଦ୍ଧଦେବଙ୍କୁ ଫାଶୀଦିଆ ହୋଇ ନାହିଁ । ସେ ଯେତେବେଳେ ତାଙ୍କ ନୂତନ ଧର୍ମ ପ୍ରଚାର ଆରମ୍ଭ କଲେ ସେତେବେଳେ ସେ ତଦାନୀନ୍ତନ ସମ୍ରାଟଙ୍କର

ଚକ୍ଷୁଶୂଳ ହୋଇଥିଲେ । ସେ ତ ସହଜରେ ତାଙ୍କୁ ଫାଶୀ ଦେଇ ପାରି-ଥାଆନ୍ତେ, କିନ୍ତୁ ତାହା କରି ନାହାନ୍ତି । କାରଣ ହତ୍ୟା କରିବା ଆମ ଭାରତୀୟ ସଂସ୍କୃତିର ବିରୋଧୀ ।”

ପଛ ଆଡକୁ କାନ ଦେଲି । “ପୁଅ ବାପକୁ, ଶିଷ୍ୟ ଗୁରୁକୁ ଆଉ ସମ୍ମାନ ଦେଖାଉ ନାହିଁ । ପୁଅ କହୁଛି, “ପ୍ରାପ୍ତେତୁ ଷୋଡଶେ ବର୍ଷେ ପୁତ୍ର ମିତ୍ର ବଦାଚରେତ୍ । ବାପା, ଶାସ୍ତ୍ର ଅନୁସାରେ ମୁଁ ତମର ବନ୍ଧୁ । ତୁମେ ମୋତେ କାହିଁକି ଶାସନ କରିବ ?” ଛାତ୍ର କହୁଛି, ଆମେ ଦରମା ଦେଉଛୁଁ, ପାଠ ପଢୁଛୁ, ଆପଣ ଆମକୁ ଫେଲ କରି ପାରିବେ ନାହିଁ । ବାପା ଟଙ୍କା ଖର୍ଚ୍ଚ କରି ପୁଅକୁ ପଢାଇବ । ପୁଅ ପଢିବ ନାହିଁ । ପରୀକ୍ଷାରେ ଫେଲ୍ ହେବ । ବାପା ଯଦି ତାକିଦ କରି ପ୍ରଦେ କଥା କହେ, ଏଣେ ଆତ୍ମହତ୍ୟାର ଧମକ । ଆଜିକାଲି କେତେ ଆତ୍ମହତ୍ୟା ହେଉଛି, ଦେଖୁଛ ତ । ଏ ଗୋଟିଏ ସଂକ୍ରାମକ ରୋଗ ହେଲାଣି । ସ୍ୱାଧୀନ ଦେଶରେ ସମସ୍ତଙ୍କର ବଞ୍ଚିବାର ଅଧିକାର ଅଛି । ଯେପରି, ମରିବାର ଅଧିକାର ଅଛି ସେପରି । ଏ ଆତ୍ମହତ୍ୟା ହେଉଛି ସିନେମା ଦେଖିବାର ପ୍ରତିକ୍ରିୟା । ଏଭଳି ଛବିକୁ ଯାଞ୍ଚ ବୋର୍ଡ କିପରି ଦେଶରେ ପ୍ରଦର୍ଶନ କରିବାକୁ ଅନୁମତି ଦେଉଛନ୍ତି ମୁଁ ବୁଝି ପାରୁନି । ପ୍ଲଟ କିଛି ନାହିଁ । ପ୍ରଥମ ଦର୍ଶନରେ ପ୍ରେମର ସଂଚାର । ଚାଲିଲା ଅଧାଯାଏଁ କୋର୍ଟସିପ୍ । ତାପରେ ବିରହ ପ୍ରେମିକା ଅବସ୍ଥାଚକ୍ରରେ ବଶବର୍ତ୍ତୀ ହୋଇ ଅନ୍ୟତ୍ର ବିବାହ କରୁଛି । ଏଣେ ପ୍ରେମିକ ଅନନ୍ୟୋପାୟ ହୋଇ ଆତ୍ମହତ୍ୟା କରୁଛି । ଏଭଳି ଛବିରୁ ଦେଶ ବା କଅଣ ଶିକ୍ଷା ପାଉଛି । ଦେଶର, ଜାତିର ମେରୁଦଣ୍ଡ ଭାଙ୍ଗି ପଡୁଛି ସିନା ।”

ଅଧ୍ୟାପକ ମହାଶୟ ତାଙ୍କର ବକ୍ତୃତା ଶେଷ କରିବା ଉପରେ । ସେ କହୁଥାନ୍ତି, “ମୁଁ ଆପଣମାନଙ୍କୁ ଆଉ ଗୋଟିଏ ଉଦାହରଣ ଦେଇ ମୋର ଭାଷଣ ଶେଷ କରିବି । ପାଶ୍ଚାତ୍ୟ ସାହିତ୍ୟର ଟ୍ରାଜେଡି ସହିତ ଭାରତୀୟ ସାହିତ୍ୟର ଟ୍ରାଜେଡିକୁ ତୁଳନା କରନ୍ତୁ । ସେକ୍ସପିଅର ଓଥେଲୋରେ ଡାସ୍‌ଡିମୋନାକୁ ତାର ସ୍ୱାମୀ ହାତରେ ହତ୍ୟା କରାଇଛନ୍ତି—କେବଳ କରୁଣ ରସ ସୃଷ୍ଟି କରିବା ପାଇଁ । ‘ହାମଲେଟ’ରେ କିଙ୍ଗ ହାମଲେଟ୍ ନିଜ ପତ୍ନୀର ଷଡଯନ୍ତ୍ରରେ ପ୍ରାଣ ହରାଇଛନ୍ତି । ‘ମାକ୍‌ବେଥ୍’ରେ ‘ମାକବେଥ୍’ ଡନ୍‌କାନ୍‌କୁ ହତ୍ୟା କରିଛି । ପାଶ୍ଚାତ୍ୟ ସାହିତ୍ୟରେ କେବଳ ହତ୍ୟା ଓ ବିଭୀଷିକା ସୃଷ୍ଟିକରି କରୁଣ ରସ ସୃଷ୍ଟି କରଯାଇଛି । ଅପର ପକ୍ଷରେ ଭାରତୀୟ ସାହିତ୍ୟର ଶ୍ରେଷ୍ଠ ଟ୍ରାଜେଡି ‘ଶକୁନ୍ତଳା’ରେ କାହାରିକୁ ମରିବାକୁ ହୋଇନାହିଁ । ଦମୟନ୍ତୀ ନଳର ବିରହରେ ଆତ୍ମହତ୍ୟା କରିନାହିଁ । କିନ୍ତୁ ‘ଦମୟନ୍ତୀ’ ବା ‘ଶକୁନ୍ତଳା’ ଓଥେଲୋ ଓ ହାମ୍‌ଲେଟ୍‌ଠାରୁ ଯଥେଷ୍ଟ ଅଧିକ କରୁଣ-ରସାତ୍ମକ ହୋଇଛି ।.....।”

ବକ୍ତୃତାର ଉପସଂହାର କରି ପୁନର୍ବାର ସେ କହିଲେ ଯେ ସେ ତାଙ୍କର ଏକଘଣ୍ଟାବ୍ୟାପୀ ଭାଷଣରେ ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କୁ ଫାଙ୍କି ଦେବରେ ସଫଳ ହୋଇ ପାରିଛନ୍ତି ।

କରତାଳି ବାଜିଲା । ସଭାପତି ଉଠିଲେ । ସେ କହିଲେ, “ପ୍ରଧାନ-ବକ୍ତା ତାଙ୍କର ଭାଷଣର ବିଷୟବସ୍ତୁ ବିଷୟରେ ସବୁ କହିସାରିବା

ପରେ ସଭାପତି ପୁଣି ସେ ବିଷୟରେ କହିବାର ଯେଉଁ ପ୍ରଥା ରହିଛି ତାହା ଅସମୀଚୀନ । ସଭାପତି କଅଣ ବା କହିବେ । ତେବେ ବ୍ୟାଘ୍ର ମାଂସ ଖାଦତି । ବାଘ ମାଉଁସ ଖାଏ । ସଭାପତିମାନେ ଶେଷରେ କହନ୍ତି । ମୁଁ କହିବି ।"

ପୁଣି ପଛରୁ କଥା ଶୁଭିଲା । "ପିଲା ପାଠ ପଢ଼ିବେ ନାହିଁ, ଫେଲ୍ ହେବେ । ଏଣେ ଶିକ୍ଷକଙ୍କୁ ଦୋଷଦେବେ ଫେଲ୍ କରିଦେଲେ ବୋଲି, ବିଶ୍ୱବିଦ୍ୟାଳୟକୁ ଦୋଷ ଦେବେ କାରଣ କୋର୍ସ କଷ୍ଟ ହୋଇଛି । ସ୍ୱାଧୀନ ଭାରତରେ ପ୍ରତ୍ୟେକ ନାଗରିକର ଅନ୍ୟର ଦୋଷ ଦର୍ଶାଇବାକୁ ଅଧିକାର ଅଛି । ଏହା ନ କରିବେ କାହିଁକି । ପୁଣି ଟିକିଏ କଥାକୁ ଧର୍ମଘଟ ।"

ଏହି ଭିତରେ ସଭାପତି ତାଙ୍କର ଭାଷଣ ଶେଷ କରିସାରିଲେଣି । ତାଳି ବାଜିଲା । ଗପର ସୁଅ ଟିକିଏ ଥମିଗଲା । ଶେଷ ସଙ୍ଗୀତ ଆରମ୍ଭ ହେଲା "ମନସିଜ ମନମୋହନ ଶ୍ୟାମ ନାଗର ହେ ।"

ତା ପରେ ଚିରାଚରିତ ପ୍ରଥା ଅନୁସାରେ ସମ୍ପାଦକ, ସଭାପତି ଓ ବକ୍ତା ଉଭୟଙ୍କୁ କୃତଜ୍ଞତା ଜଣାଇଲେ । ଯେଉଁ ଭଦ୍ରବ୍ୟକ୍ତିମାନେ ସେମାନଙ୍କର ମୂଲ୍ୟବାନ ସମୟ ନଷ୍ଟ କରି ସଭାକୁ ଆସି ଧୈର୍ଯ୍ୟର ସହିତ ମନୋଯୋଗ ଦେଇ ବକ୍ତାଙ୍କର ଭାଷଣ ଶୁଣିଥିବା ହେତୁ ଧନ୍ୟ-ବାଦ ପାଇଲେ ସେମାନଙ୍କ ମଧ୍ୟରେ ସେ ଦୁଇଜଣ ମଧ୍ୟ ଥିଲେ ।

ସେତେବେଳକୁ ସନ୍ଧ୍ୟାର ଧୂପ ଛାୟା ଅପସରି ଯାଇଥିଲା । ଆକାଶରେ ଖଣ୍ଡେ ଖଣ୍ଡେ ବାଦଲ ଏପାଖ ସେପାଖ ହୋଇ ବୁଲୁଥିଲେ । ବିଦ୍ୟୁତର ଚମକରେ ବୋଧ୍ୟା ପାହାଡ଼ର ଶିଖର ଦେଶ ବେଳେ ବେଳେ ଝଲସି ଉଠୁଥିଲା । ଧୀରେ ଧୀରେ ମୁଁ ରାଜଦାଣ୍ଡ ଦେଇ ଘରକୁ ବାହୁଡ଼ିଲି ।

---

# ଦିନ ଯେବେ ସରିଯାଏ

ଦଶ ବର୍ଷ ହେଲା ସରୋଜିନୀ ଦେବୀଙ୍କର ଜୀବନରେ ଆସିଛି ଏକ ବିରାଟ ପରିବର୍ତ୍ତନ । ସେହିଦିନଠାରୁ ଜରା ତାଙ୍କ ଶରୀର ଉପରେ ଆଧିପତ୍ୟ ବିସ୍ତାର କରିବସିଛି । ଶସ୍ତା କୃତ୍ରିମ ରେଶମୀ କନା ଥରେ ଧୋବା ଘରୁ ଆସିଲେ ସଂକୁଚିତ ହୋଇଯିବା ପରି ତାଙ୍କର ସଂସାର ଖୁବ୍ ଦ୍ରୁତ ଗତିରେ ସରିଯାଇଛି । ଆଜି ସେ ତାଙ୍କର ବିଶାଳ ଗୃହର ଦୋମହଲା ଉପରେ ଗୋଟିଏ ଛୋଟ କୋଠରୀରେ କେତେ ବର୍ଗଗଜ ପରିମିତ ସ୍ଥାନରେ ଆବଦ୍ଧ ହୋଇ ପଡ଼ି ରହିଛନ୍ତି । ଜଣେ ମଣିଷର ସାଧାରଣତଃ ଆୟୁଷ ଯେତେ, ତାଠାରୁ ଯଥେଷ୍ଟ ବେଶୀ ଦିନ ସେ ବଞ୍ଚିଲେଣି । ବୟସ ହେତୁ ଇନ୍ଦ୍ରିୟଗୁଡ଼ିକ କ୍ରମେ ଦୁର୍ବଳ ହୋଇ ପଡ଼ିଲାଣି । ସେ ୯୦ ବର୍ଷ ଅତିକ୍ରମ କଲାବେଳକୁ ତାଙ୍କର କାର୍ଯ୍ୟକ୍ଷେତ୍ର ସଂକୀର୍ଣ୍ଣରୁ ସଂକୀର୍ଣ୍ଣତର ହୋଇ ଘରର ମଶିଣା ଉପରେ କେବଳ ଆବଦ୍ଧ ହୋଇ ରହିଲା ।

ହୁଏତ ଆଉ କିଛିଦିନ ସେ ଘରର ମାଲିକାଣୀ ହୋଇ ବୋହୂମାନଙ୍କ ଉପରେ ହୁକୁମ ଜାରି କରିଥାନ୍ତେ, ପୁଅମାନେ ଖାଇ ବସିବା ସମୟରେ ପଙ୍ଖା ଧରି କାଳ୍ପନିକ ମାଛିମାନଙ୍କୁ ତଡ଼ି ଦେଉଥାନ୍ତେ । ସନ୍ଧ୍ୟାବେଳକୁ ନାତି ନାତୁଣୀମାନଙ୍କ ଆଗରେ କେତେ ଅସୁର ଅସୁରୁଣୀ ଗପ କହୁଥାନ୍ତେ । କିନ୍ତୁ ତାଙ୍କର ମନେହେଲା ଯେପରି ପରିବାର ମଧ୍ୟରେ କେହି ତାଙ୍କର ଆବଶ୍ୟକତା ଉପଲବ୍ଧି କରୁନାହାନ୍ତି ତେଣୁ ସେ ନିଜ ଇଚ୍ଛାରେ କୌଣସି କାର୍ଯ୍ୟ କରିବା ଦ୍ୱାରା ବରଂ ଅଯଥା ନିଜକୁ ପୀଡ଼ା ଦେଉଛନ୍ତି । ତାଙ୍କର ଚୋଲିତ ଚର୍ମରେ ସେ ବାର୍ଦ୍ଧକ୍ୟର ଚିହ୍ନମାନ ଲକ୍ଷ୍ୟକରି ପାରୁ ନ ଥିଲେ । ହାଡ଼ର ଶୀତଳତା ଅନୁଭବ କରି କେବଳ ସେ ଜାଣିପାରିଥିଲେ ଯେ, ତାଙ୍କର ବୃଦ୍ଧାବସ୍ଥା ଆସି ପହଞ୍ଚିଛି । ସେହିପରି କେହି ତାଙ୍କୁ କିଛି ନ କହିଲେ ମଧ୍ୟ ପରିବାରରେ ସେ ନିଜର ଅସ୍ତିତ୍ୱର ବ୍ୟର୍ଥତା ଅନୁଭବ କରିବାକୁ ଲାଗିଲେ । ତେଣୁ ସେ ସ୍ୱେଚ୍ଛାପ୍ରଣୋଦିତ ହୋଇ ଉପର ମହଲାର ସେହି ନିର୍ଜ୍ଜନ କୋଠରୀଟିରେ ଅବସର ଗ୍ରହଣ କରିଥିଲେ । ତଥାପି ପୁଣି ଜୀବନର ଘୂର୍ଣ୍ଣନ ମଧ୍ୟକୁ ଫେରି ଆସିବାକୁ ଏକ କ୍ଷୀଣ ଆଶା ତାଙ୍କ ଅନ୍ତରର ନିଭୃତ କୋଣରେ ଲୁକ୍କାୟିତ ଭାବେ ରହିଥାଏ । କିନ୍ତୁ କେହି ତାଙ୍କୁ ଆଉ ଫେରାଇ ଆଣିଲେ ନାହିଁ । ସେହି ସୀମାବଦ୍ଧ ପରିସର ମଧ୍ୟରେ ସେ ଅଭ୍ୟସ୍ତ ହୋଇଗଲେ । କ୍ରମେ ସେ ସ୍ଥାନ ତାଙ୍କର ପ୍ରିୟ ହୋଇ ଉଠିଲା ।

ଦଶ ବର୍ଷ ବିତି ଗଲାଣି । ଏହି ଦଶ ବର୍ଷ ମଧ୍ୟରେ ସରୋଜିନୀ ଦେବୀ ଏହି ଛୋଟ ଘରଟି ଭିତରେ ଆବଦ୍ଧ ରହି ସମୟ ଅତିବାହିତ କରୁଛନ୍ତି । ଏହି ନିର୍ଜ୍ଜନ କ୍ଷୁଦ୍ର ପରିସର ତାଙ୍କର ବାର୍ଦ୍ଧକ୍ୟ ଜୀବନର ପ୍ରଧାନ ଆଶ୍ରୟସ୍ଥଳ ହୋଇଛି । ଇନ୍ଦ୍ରିୟମାନ କ୍ରମେ କ୍ରମେ ଶିଥିଳ ହୋଇଗଲେଣି । ଚକ୍ଷୁର ଦୃଷ୍ଟିଶକ୍ତି ଏକାବେଳକେ ଲୋପ ହୋଇଯାଇଛି । କିନ୍ତୁ ତାଙ୍କର ସ୍ମୃତିଶକ୍ତି ପ୍ରଖର ହୋଇ ଯାଇଥିବାରୁ ଦୀର୍ଘ

ଅତୀତ ଜୀବନ୍ତ ହୋଇ ତାଙ୍କ ଆଗରେ ଠିଆ ହୋଇଛି । ଅନ୍ୟ ଇନ୍ଦ୍ରିୟ-ମାନ ଦୁର୍ବଳ ହୋଇଯିବାରୁ ଶ୍ରୁତିଶକ୍ତି ଖୁବ୍ ତୀକ୍ଷ୍ଣ ହୋଇ ଆସିଛି । ବାହାର ଦୁନିଆ ସହିତ ତାଙ୍କର ଯାହା କିଛି ସମ୍ପର୍କ ଅଛି ତାହା କେବଳ ଏହି ଇନ୍ଦ୍ରିୟ ସାହାଯ୍ୟରେ । ସେ ମସିଣା ଉପରେ ପଡ଼ିରହି ତଳଘରୁ ଏବଂ ରାସ୍ତା ଉପରୁ ପରିଚିତ ସ୍ୱରମାନ ଶୁଣି ଶୁଣି ଜୀବନ ଧାରଣ କରିବାକୁ ଲାଗିଲେ । ଫୁଲର ବାସନାରୁ ଯେପରି ଫୁଲର ସୌନ୍ଦର୍ଯ୍ୟ ନିରୂପଣ କରାଯାଇ ପାରେ, ବାହାରୁ ଆସୁଥିବା ଶବ୍ଦ-ମାନଙ୍କରୁ ସେହିପରି ସେ ଅନ୍ୟମାନଙ୍କର କାର୍ଯ୍ୟକଳାପ, ଗତିବିଧି ନିର୍ଣ୍ଣୟ କରୁଥିଲେ ।

ଦିନସାରା ମସିଣା ଉପରେ ବସି ରହି ସରୋଜିନୀ ଦେବୀ ଦିନର କୋଳାହଳ ଶୁଣୁଥାନ୍ତି । ସନ୍ଧ୍ୟା ମାଡ଼ି ଆସିଲେ ଘରଟିରେ ଚାରିଆଡେ ନୀରବ ହୋଇଯାଏ । ସମସ୍ତଙ୍କ ଆଖି ବୁଜି ହୋଇଯାଏ କିନ୍ତୁ ତାଙ୍କର ଚକ୍ଷୁ ଦୁଇଟିକୁ ନିଦ ଆସେନା । ସେ ରାତିଯାକ ସେହିପରି ମସିଣା ଉପରେ ପଡ଼ି ରହିଥାନ୍ତି ।

ସବୁଦିନ ପରି ସେଦିନ ମଧ୍ୟ ପୂର୍ବାକାଶ ଉଦୀୟମାନ ସୂର୍ଯ୍ୟଙ୍କର ରକ୍ତାଭ କିରଣରେ ରଞ୍ଜିତ ହେବା ପୂର୍ବରୁ ସରୋଜିନୀ ଦେବୀଙ୍କ ନିଦ୍ରା ଭାଙ୍ଗି ଯାଇଥିଲା । ଯା ମଧ୍ୟରେ ସେ ସେଠାରେ କେତେ ସମୟ ହେଲା ପଡ଼ି ରହିଛନ୍ତି । ବାହାରେ କେତେ କଥା ଘଟି ଯାଉଛି, ତାହା ସେତେ-ବେଳଯାଏ ତାଙ୍କୁ ଜଣା ନଥିଲା । ଦୁଧବାଲାର ସାଇକଲ୍ ଘଣ୍ଟି ଶୁଣି ସେ ଜାଣିଲେ ଯେ ରାତି ପାହି ସକାଳ ହେଲାଣି । ପ୍ରାୟ ୫ ମିନିଟ ପରେ ଘରର ଦ୍ୱାର ଖୋଲିବା ଶବ୍ଦ ଶୁଭିଲା । କବାଟର ହୁକ୍‌ରେ ଅନେକ ଦିନ ହେଲା ତେଲ ଦିଆଯାଇ ନ ଥିବାରୁ ତାହା ଏକ ପ୍ରକାର କର୍କଶ ସ୍ୱର କରୁଥିଲା । ଶବ୍ଦ ଶୁଣି ସରୋଜିନୀ ଦେବୀ ଜାଣିପାରିଲେ ଯେ ତାଙ୍କର ବଡ଼ବୋହୂ ଦୁଧ ନେବାକୁ ବାହାରକୁ ଆସିଲା । ସେତେବେଳେ ସେ ମନେ ମନେ ଭାବିଲେ, 'ଅଳସେଇ ବୋହୂଗୁଡ଼ାକ, କେବେ ଆଉ ବୁଦ୍ଧି ହେବ । ଜାଣୁ ନାହାନ୍ତି, ଦୁଧବାଲା ଏହିପରି ଆଉ କେତେ ଘର ଦୁଧ ଦେଇ ଦେଇ ଯିବ । ଆସି ୪୫ ବର୍ଷ ହେଲାଣି । କେତେ ନାତି ନାତୁଣୀ କଲେଣି । ତେବେ ସୁଦ୍ଧା ଜ୍ଞାନ ଆସି ନାହିଁ ।'' ଏହିପରି ଭାବୁ ଭାବୁ ସରୋଜିନୀ ଦେବୀ ତକିଆ ଉପରୁ ମୁଣ୍ଡ ଉଠାଇ ବସିବାକୁ ଉଦ୍ୟତ ହେଲେ ।

× × × ×

ଝିମେଇ ଝିମେଇ ସକାଳ ଆସିଲା....ଫେରିବାଲାମାନେ ଗୋଟି ଗୋଟି ହୋଇ ଆସି ପହଞ୍ଚିଲେ । ''ବାଇ ବା ...ଇ....ଗ .. ଣ....ମ.... ଦ....ରଙ୍ଗା....ଶାଗ'', 'ପାଚିଲା କଦଳୀ; ସିଲେଟ କମଳା', 'ବଡ଼ ମାଛ' ....ପ୍ରଭୃତି ଡାକ ଛାଡ଼ି ଘର ଆଗରେ ଜମା ହେଲେ । ସରୋଜିନୀ ଦେବୀ ଦୀର୍ଘ ବର୍ଷ ବର୍ଷ ଧରି ଏମାନଙ୍କ ସହିତ କାରବାର କରିଥିବାରୁ ଡାକିବାର ଢଙ୍ଗ ଓ ସ୍ୱରରୁ ସେମାନଙ୍କୁ ଚିହ୍ନି ନେଉଥିଲେ । ଭିନ୍ନ ଭିନ୍ନ ଫେରିବାଲାଙ୍କର ଡାକରେ ଭିନ୍ନ ଭିନ୍ନ ପ୍ରକାର ବିଶେଷତ୍ୱ ଥିଲା । ସେମାନଙ୍କର ଡାକ ସବୁ ଶୁଣି ଅତୀତ ଦିନର କେତେ କଥା ତାଙ୍କର ମନେ ପଡ଼ିଲା – ଯେତେବେଳେ ସେ ଏହି ଘରର ମୁରବି ଥିଲେ—ଆଉ

ଏଇ ଫେରିବାଲାଙ୍କ ସହିତ ଆଳୁ, ବାଇଗଣ, କଦଳୀ ଇତ୍ୟାଦି ଦର କରୁଥିଲେ ।

"ସେ କଖାରୁଟାକୁ ଦୁଇ ଅଣାରୁ ପଇସାଟାଏ ବେଶୀ ଦେବି ନାହିଁ—ଏଁ ! ସେ ପୋକଡା ବାଇଗଣ ସେର ତିନି ଅଣା ? ତୁ କଣ ଏହାକୁ ପୋକଙ୍କ ଖଇଜ ବୋଲି—ମନେ କଲୁଣି କି ? ଛଅ ପଇସା—ଦେଲେ ଦେ—ନଇଲେ ନେଇଯା ।"

ଖୁବ୍ ନୀଚ ସ୍ୱରରେ କହୁଥିବାରୁ ସରୋଜିନୀ ଦେବୀ ମଝିଆଁ ବୋହୂ ବୋଲି ଜାଣିନେଲେ । ମଝିଆଁ ବୋହୂର ଆଜିକାଲି ଭରି ଘରକରଣା ବୁଦ୍ଧି ହେଲାଣି । ସେ ବୁଝିଲାଣି ଯେ ପଇସାଟାର ମୂଲ୍ୟ ଯେ ଜାଣିଛି ଲକ୍ଷ୍ମୀ ତା' ଉପରେ ସନ୍ତୁଷ୍ଟ ହୁଅନ୍ତି ।

ତାପରେ ଘରେ କିଛି ସମୟ କୌଣସି ଶବ୍ଦ ଶୁଣାଗଲା ନାହିଁ । କିନ୍ତୁ ବାହାରେ ଝମେଲା କ୍ରମଶଃ ବଢ଼ି ଚାଲିଥାଏ । ପୁଣି ହଠାତ୍ ଘର କୋଳାହଳରେ କମି ଉଠିଲା । ସରୋଜିନୀ ଦେବୀ ଜାଣିପାରିଲେ ଯେ ଦଶଟା ବାଜିଲାଣି, ପୁଅମାନେ ଅଫିସ୍‌କୁ ଯିବେ ଏବଂ ନାତି ନାତୁଣୀମାନେ ସ୍କୁଲକୁ ଯିବେ । 'ତରକାରି ଟିକେ ଦିଅ' 'ମାଛ ଭଜା ଖଣ୍ଡେ ଦିଅ' 'ପାଣି ମଗାଏ ଦିଅ' 'ଚଞ୍ଚଳ ଦହି ଆଣ' ଏହିପରି ଶୁଭିଲା । ସେତେବେଳେ ସରୋଜିନୀ ଦେବୀଙ୍କର ଅତ୍ୟନ୍ତ ଇଚ୍ଛା ହେଲା ଯେ ସେ ଥରେ ତଳମହଲାକୁ ଯାଇ ରୋଷଇ ଘର ପରିଦର୍ଶନ କରିଆସିବେ । ଅନେକ ବର୍ଷ ହେଲା ରୋଷାଇ ଘର ସହିତ କୌଣସି ସମ୍ପର୍କ ନ ଥାଇ ମଧ୍ୟ ତା' ପ୍ରତି ମମତା ତାଙ୍କର କମି ନାହିଁ । ମନେ ମନେ ସେ ଭାବିଲେ, ବୋହୂମାନେ ଏବଂ ନାତୁଣୀ ବୋହୂମାନେ ଏପରି ଅପାରଗ ଯେ ସେମାନେ ନିଜ ନିଜର ସ୍ୱାମୀମାନଙ୍କୁ ଠିକ୍ ସମୟରେ ପରଷି ପାରୁ ନାହାନ୍ତି । ତାଙ୍କ ଅମଳରେ ସେ ତ ତାଙ୍କ ସ୍ୱାମୀଙ୍କୁ ଏପରି କେବେ ମାଗିବାର ଦେଖି ନାହାନ୍ତି । ଯାହା ଦରକାର ସେ ମାଗିବା ଆଗରୁ ସରୋଜିନୀ ଦେବୀ ତାହା ଦେଇ ଦେଉଥିଲେ । ଅଫିସ ଯିବାବେଳେ କଦଳୀ ପତ୍ରରେ ଜଳଖିଆ ବାନ୍ଧି ସ୍ୱାମୀଙ୍କ ହାତରେ ଦେଉଥିଲେ ।

ପିଲାମାନେ ଯେତେବେଳେ ସ୍କୁଲକୁ ଯିବା ନିମିତ୍ତ ଧାଁ-ଧପଡ଼ କଲେ ସେତେବେଳେ ସରୋଜିନୀ ଦେବୀ ମସିଣା ଉପରେ ଗୋଡ ମୋଡ଼ିମାଡ଼ି ହୋଇ ବସିଲେ । ସେମାନଙ୍କୁ ଲୁଗାପଟା ପିନ୍ଧାଇଦେଇ ସ୍କୁଲକୁ ବାଟେଇଦେଇ ଆସିବାକୁ ତାଙ୍କର ଇଚ୍ଛା ହେଲା । କିନ୍ତୁ ସେ ଏକ ଦୀର୍ଘନିଃଶ୍ୱାସ ମାରି ଅବସନ୍ନ ହୋଇ ତକିଆ ଉପରେ ପଡ଼ିଗଲେ । ସେଠାରେ ପଡ଼ିରହି ସେ ଜାଣିପାରିଲେ ଯେ ସକାଳର ଘର କାମ ସରି ଆସିଲାଣି । ଘରେ ବାସନକୁସନ ମଜା ହେବାର ଝଣ୍ ଝଣ୍ ଶବ୍ଦ ଶୁଭୁଛି । ରୋଷାଇ ଘର ଝାଡ଼ୁ କରଯାଉଛି । ପାଣି ଟବ୍‌ର ନଳୀ ଖୋଲା ହୋଇଥିବାରୁ ସେଥିରୁ ପାଣି ଧାର ଧାର ହୋଇ ପଡ଼ୁଛି । ଚାକର ମଧୁଆ ବଡ଼ପାଟିରେ କଅଣ ଆପତ୍ତି କରି କହୁଛି ।

ତାପରେ ସେ ଶୁଣିଲେ ଯେ ବୋହୂମାନେ ସେମାନଙ୍କର ଛୋଟ ପିଲାମାନଙ୍କୁ କାହାଣୀ ଶୁଣାଇ ଖୁଆଉଛନ୍ତି । ବଡ ବୋହୂ ଚେଁ ଚେଁ

ସ୍ୱରରେ ଝିକରକୁ ଗାଳି ଦେଉଛି । ବଡ ବୋହୂର ସ୍ୱର ଏପରି କର୍କଶ ଯେ ତାହା ସବୁବେଳେ ସରୋଜିନୀ ଦେବୀଙ୍କର ଶ୍ରୁତିକଟୁ ହୁଏ । କିନ୍ତୁ ଆଜି ତାଙ୍କର ମନେହେଲା ଯେପରି ଅନେକ ଦିନ ତଳର ନିଜର ସ୍ୱର ସେ ଶୁଣି ପାରୁଛନ୍ତି । ବଡ ବୋହୂ ତା ପୁଅକୁ ଗାଳିଦେଇ କହିଲା, "ଟୁନା, ତୁ ଯଦି ଦୁଧ ନ ଖାଉ ତେବେ ମୁଁ ମରିଯିବି ।" ଆଶ୍ଚର୍ଯ୍ୟ ! ସରୋଜିନୀ ଦେବୀ ଠିକ୍ ଏହିପରି ତାଙ୍କର ବଡ ନାତି ମଣ୍ଟୁକୁ ଦିନେ କହୁଥିଲେ । ମଣ୍ଟୁ ଅନେକ ଦିନ ହେଲା ଯୁଦ୍ଧକୁ ଯାଇ ଆଉ ଫେରି ନାହିଁ ।

ତାପରେ ଘରର ଯୁବତୀ ଝିଅମାନେ ବାଥ୍‌ରୁମ୍‌ରୁ ଉଚ୍ଚ ସ୍ୱରରେ ଗୀତ ଗାଇବାରୁ ସରୋଜିନୀ ଦେବୀଙ୍କର ଭାବନା ସ୍ରୋତ ଥମିଗଲା । ଘରର କୋଳାହଳ ମଧ୍ୟରେ ସେ ପ୍ରତିଦିନ ଏହି ସଙ୍ଗୀତକୁ ସ୍ପଷ୍ଟ-ଭାବରେ ଶୁଣି ପାରୁଥିଲେ । କିନ୍ତୁ ଆଜି ତାଙ୍କର ସ୍ନେହର ମଣ୍ଟୁ ମନେ ପଡ଼ିଯିବାରୁ ତାଙ୍କର ମୁଣ୍ଡ ଘୂରିଗଲା । ତାଙ୍କର ଦୁର୍ବଳ ମସ୍ତିଷ୍କରେ ପୁଞ୍ଜୀଭୂତ ଏହି ଶବ୍ଦମାନ ମଧ୍ୟରେ ତାଙ୍କୁ ନିଦ୍ରା ଲାଗିଗଲା ।

× 		× 		× 		×

କିଛି ସମୟ ପରେ ପୁଣି ସରୋଜିନୀ ଦେବୀଙ୍କର ନିଦ ଭାଙ୍ଗିଲା । ବାହାରର କୋଳାହଳ ମଧ୍ୟରେ ଘର ଭିତର ସମ୍ପୂର୍ଣ୍ଣ ନିସ୍ତବ୍ଧ ରହିଥିଲା । ସେ ବୁଝିପାରିଲେ ନାହିଁ, କାହିଁକି ସେଦିନ ଭଳି ପଛ ଚତୁ-ତରା ଉପରେ ମହିଳାମାନଙ୍କର ମଧ୍ୟାହ୍ନ ଅଧିବେଶନ ବସି ନାହିଁ । ତେବେ କଣ ସେ ଶୋଇଥିବା ଅବସ୍ଥାରେ ଏହା ସରି ଯାଇଛି । ନଚେତ୍ ହୁଏତ ବଡ ବୋହୂକୁ ଟିକିଏ ତନ୍ଦ୍ରା ଲାଗିବାରୁ ସେ ଅଧିବେଶନ ସ୍ଥଗିତ କରି ଦେଇଛି । ଅଧିବେଶନ ଚାଲିଥିବାବେଳେ ସରୋଜିନୀ ଦେବୀ ମଶିଣା ଉପରେ ପଡ଼ି ରହି ମନୋଯୋଗ ସହିତ ସମସ୍ତ ବିଷୟ ଶୁଣନ୍ତି । କଥାବାର୍ତ୍ତାର ବିଷୟବସ୍ତୁ ଶୁଣିବା ତାଙ୍କର ପ୍ରଧାନ ଲକ୍ଷ୍ୟ ନ ଥାଏ । ଏତେ ନିକଟରେ ମନୁଷ୍ୟର ସ୍ୱର, ହସ, ଥଟ୍ଟା, ପରିହାସ ଥିବାର ଏହି ଭାଗ୍ୟରେ ମାତ୍ର ସେ ଶୁଣିବାକୁ ପାଆନ୍ତି । ସେତେବେଳେ ସେ ରୋଗ ଯନ୍ତ୍ରଣା ଭୁଲିଯାଇ ସେମାନଙ୍କର ଆଲୋଚନାରେ ଭାଗ ନେବାକୁ ଇଚ୍ଛା ପୋଷଣ କରି ଥାଆନ୍ତି ।

କିନ୍ତୁ ଅଧିକାଂଶ ସମୟରେ ସରୋଜିନୀ ଦେବୀ ନିଜେ ସେମାନଙ୍କର ଆଲୋଚନାର କଥାବସ୍ତୁ ହୋଇଥାନ୍ତି । ସେତେବେଳେ ସେ ଅସ୍ୱାଭାବିକ ଭାବେ ଆଗ୍ରହର ସହିତ ସେମାନଙ୍କର କଥାବାର୍ତ୍ତା ଶୁଣନ୍ତି ।

ତାଙ୍କର ବଡ ବୋହୂ ଅନେକ ସମୟରେ କହେ, "ତିମି ମାଛର ଆୟୁଷ ଯେତିକି, ତାର ଆୟୁଷ ସେତିକି । ତା ଆଖି ଆଗରେ ତ ପୁଅମାନେ ମରିଯିବେ, କିନ୍ତୁ ସେ ଏମିତି ବସି ରହିଥିବ ।"

ଦୟାପରାୟଣା କୌଣସି ପଡ଼ୋଶୀ ସ୍ତ୍ରୀଲୋକ ସମାଲୋଚନ କରି କହେ, "ବିଚାରୀ ! ମୋର ମନେ ହେଉଛି, ସେ ସଂସାର ଜଞ୍ଜାଳରୁ ମୁକ୍ତ ହେବାପାଇଁ ଅନ୍ତରର ସହିତ ଭଗବାନଙ୍କୁ ଡାକୁଛି ।"

ତା ପରେ ବଡ ବୋହୂ ଉତ୍ତରରେ କହେ, "ସେ ଆଶା ଜମା ନାହିଁ । ତୁମେ ଦେଖିବ ତ ସେ ଭୂତଗୁଡ଼ା କିପରି ଟାକୁ ଟାକୁ କରି ଗିଳିଦିଏ, ଆଉ ତାର କାନ ପୁଣି ଏମିତି ଯେ—ସେ ଭୂତ ଆସିବା ସଙ୍ଗେ ସଙ୍ଗେ ତାହା ଜାଣିନିଏ ।"

ଏହିପରି ମନ୍ତବ୍ୟ ଶୁଣି ସରୋଜିନୀ ଦେବୀଙ୍କ ଦିହସୁହା ହୋଇ-ଗଲାଣି । ମୃତ୍ୟୁ ତାଙ୍କ ପକ୍ଷରେ ଶ୍ରେୟସ୍କର ବୋଲି ସେ ଯେତେ ହୃଦୟଙ୍ଗମ କରନ୍ତି ଜୀବନ ପ୍ରତି ମମତା ତାଙ୍କର ସେତେ ଅଧିକ ବଢ଼ି ଚାଲିଥାଏ । ଏହି କୋଳାହଳମୟ ପୃଥିବୀରେ ସେ ତାଙ୍କର ପରିଚିତ ସ୍ୱରମାନଙ୍କୁ ଛାଡ଼ିଯିବାକୁ କଦାପି ଚାହୁଁ ନ ଥିଲେ । ଏଥିପାଇଁ ବରଂ ପୃଥିବୀ ତାଙ୍କ ଆଗରେ ମଧୁମୟ ମନେ ହେଉଥିଲା ।

ମଧ୍ୟାହ୍ନର ନୀରବତା ଭାଙ୍ଗି କାଚବାଲା 'ଚୁଡ଼ି, ଚୁ...ଡ଼ି' ଡାକଦେଇ ଚାଲିଯାଏ । ସହସା ତଳ ମହଲାର ଅଗଣାରେ ହାଲୁକା ଦ୍ରୁତ ପଦ ଶବ୍ଦ ଶୁଭେ । ସରୋଜିନୀ ଦେବୀ ଜାଣି ପାରନ୍ତି ଯେ ଏହା ତାଙ୍କର ସାନପୁଅର ଝିଅ ମାଳତୀର । ପରିବାର ମଧ୍ୟରେ ଏହି ମାଳତୀ କେବଳ ତାଙ୍କର ତତ୍ତ୍ୱ ନିଏ । ସରୋଜିନୀ ଦେବୀ ତା ଆଗରେ କେତେ କାହାଣୀ କହନ୍ତି । ମା ଡାକିବା ପର୍ଯ୍ୟନ୍ତ ମାଳତୀ କାହାଣୀ-ଗୁଡ଼ିକ ମନୋଯୋଗ ସହିତ ଶୁଣୁଥାଏ । ଅନେକ ସମୟରେ ସେ କହେ, "ବୁଢ଼ୀମା, ତମର ବାହାଘର କଥା କୁହ ।" ସରୋଜିନୀ ଦେବୀ ବାହାଘର କାହାଣୀ କହୁ କହୁ ତାଙ୍କର ବିବର୍ଣ୍ଣ ମୁଖ ଉପରେ ଯେତେବେଳେ ଲୁହର ଧାର ବହି ଆସେ ସେତେବେଳେ ମାଳତୀ ତାର ରଙ୍ଗିନ ଶାଢ଼ୀର କାନିରେ ମୁଖର ଗଳିତ ଚର୍ମକୁ ପୋଛି ପକାଏ । ସରୋଜିନୀ ଦେବୀଙ୍କର ଇଚ୍ଛା ହୁଏ, ସେ ମାଳତୀର କଅଁଳିଆ ମଣିବନ୍ଧ ପାଇଁ ନାଲି ରଙ୍ଗର ହଳେ ଚୁଡ଼ି କିଣିଦେବେ । କିନ୍ତୁ ସେତିକି କରିବାକୁ ତାଙ୍କର ଅର୍ଥ ବା ଶକ୍ତି ନ ଥାଏ ।

x x x x

ଗେଣ୍ଡାଚାଲି ପରି ମନ୍ଥର ଗତିରେ ଦିନ ଆଗେଇ ଯାଇ ସନ୍ଧ୍ୟାର ଅନ୍ଧାର ମଧ୍ୟରେ ମିଶିଗଲା । ସୂର୍ଯ୍ୟଙ୍କର ବିଦାୟକାଳୀନ କିରଣ ଏବଂ ଉଦୀୟମାନ ଚନ୍ଦ୍ରମାଙ୍କର ଶୁଭ୍ର ଶୀତଳ ରଶ୍ମିର ସମାହାରରେ ଏକ ଅପୂର୍ବ ପ୍ରଦୋଷର ସଞ୍ଚାର ହେଲା । ଦୂର ଦେବାଳୟ ମଧ୍ୟରୁ ଆରତି ଘଣ୍ଟି ଶୁଣିବା ପର୍ଯ୍ୟନ୍ତ ସରୋଜିନୀ ଦେବୀ ସନ୍ଧ୍ୟା ହେବା ବିଷୟ ଜାଣି ନ ଥିଲେ । ତଳ ଘରୁ ଶଙ୍ଖ ବାଜିଉଠିଲା । କେତେ ବର୍ଷ ହେଲା ସେ ଶଙ୍ଖ ବଜାଇ ନାହାନ୍ତି, ଅଗଣାରେ ଥିବା ତୁଳସୀଚଉରା ପାଖରେ ସାତ ଦୀପ ଜାଳି ଆଣ୍ଠୁମାଡ଼ି ପୁଅ, ଝିଅ, ନାତି, ନାତୁଣୀଙ୍କ ପାଇଁ ଶୁଭ ମନାସି ନାହାନ୍ତି । ତାଙ୍କର ଇଚ୍ଛାହେଲା, କେବଳ ଠାକୁରଙ୍କ ପାଖରେ ପିଲାମାନଙ୍କର ଶୁଭ ମନାସିବା ପାଇଁ ସେ ତଳକୁ ଓହ୍ଲାଇ ଯାଇ ଶଙ୍ଖଆଠାରୁ ଶଙ୍ଖ ଛଡ଼ାଇ ଆଣି ନିଜେ ବଜାଇ ସାତଦୀପ ଜାଳିବେ । କିନ୍ତୁ ତାଙ୍କର ଏହି ବାସନା ଉଦ୍ରେକ ହେବା ପୂର୍ବରୁ ତାଙ୍କର କ୍ଲାନ୍ତ ଅବସନ୍ନ ଦେହ ଭିତରେ ତାହା କୁଆଡ଼େ ମିଳାଇ ଯାଇଥିଲା ।

ରାତିର ଭୟଙ୍କର ଅନ୍ଧାର ମାଡ଼ିଆସିଲା । ସରୋଜିନୀ ଦେବୀଙ୍କ ଆଗରେ ରାତି ଓ ଦିନ ମଧ୍ୟରେ କୌଣସି ତଫାତ ନଥିଲା । ରାତିର ନିର୍ଜ୍ଜନତାକୁ ସେ ବେଶୀ ଭୟ କରୁଥିଲେ । ତାଙ୍କର ମନେହୁଏ ଯେପରି ଏହା ତାଙ୍କୁ ଏକ ଅବଶ୍ୟମ୍ଭାବୀ ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳ ଆଡ଼କୁ ଟାଣିନେଇ ଯାଉଛି – ଯେଉଁଥିରୁ ଉଦ୍ଧାର ପାଇବାର ଆଉ କୌଣସି ଉପାୟ ନାହିଁ । ସରୋଜିନୀ ଦେବୀ ତାଙ୍କର ତନ୍ଦ୍ରାଜଡ଼ିତ ଓଜନିଆ ମୁଣ୍ଡଟିକୁ ତକିଆ ଉପରେ ରଖି ଏପାଖ ସେପାଖ କରୁଥାନ୍ତି । ନିଶାର ଗର୍ଜ୍ଜନ ମଧ୍ୟରେ କେତେ ଧ୍ୱନି ତାଙ୍କର ଅନେକ ଦିନର ପରିଚିତ ଥିଲା । ତା ବ୍ୟତୀତ ଆଉ କେତେକ ନୂତନ ସ୍ୱର ମଧ୍ୟ ଶୁଣିବାକୁ ପାଇଲେ । ମଝିରେ ମଝିରେ କୁକୁର ଭୁକି ଉଠୁଥାଏ, ଝିଣ୍ଟିକାମାନେ ଏକ ସ୍ୱରରେ ଚିଁ ଚିଁ କରୁଥାନ୍ତି । ଦୂରର ଗୋଟିଏ ଘର ଭିତରୁ ଜଣେ ବୃଦ୍ଧର ନିଦ୍ରାଜଡ଼ିତ କାଶଧ୍ୱନି ଶୁଭୁଥାଏ । ପାଖ ଘରର ଛୋଟିଆ ଶିଶୁ ବେଳେ ବେଳେ ରାତିର ନିସ୍ତବ୍ଧତାକୁ ସଜାଗ କରି କାନ୍ଦି ଉଠୁଥାଏ । ଚନ୍ଦ୍ର କିରଣକୁ ପ୍ରତ୍ୟୁଷର ଆଦ୍ୟାଲୋକ ବୋଲି ମନେ କରି କ୍ଷୁଦ୍ର କ୍ଷୁଦ୍ର ପକ୍ଷୀମାନେ ଥରେ ଥରେ ଚେଇଁ ଉଠୁଥାନ୍ତି । ସରୋଜିନୀ ଦେବୀ ଏ ସବୁ ଧ୍ୱନି ଅନେକ ବର୍ଷ ଧରି ଖୁବ୍ ଆଗ୍ରହର ସହିତ ଶୁଣି ଆସୁଥିବାରୁ ସେଗୁଡ଼ିକ ତାଙ୍କୁ ରାତି ସହିତ ଏକାକାର ମନେ ହେଲା ।

ଅନେକଥର କେତେ ଅପରିଚିତ ଶବ୍ଦ ତାଙ୍କ ଆଗରେ ରହସ୍ୟମୟ ବୋଧ ହୋଇଛି । ସେ ସେ ସ୍ୱରକୁ ଚିହ୍ନିବା ନିମିତ୍ତ ଯଥାଶକ୍ତି ଚେଷ୍ଟାକରି ତାଙ୍କ ଦୁର୍ବଳ ମସ୍ତିଷ୍କକୁ ଅନେକ ପୀଡ଼ା ଦେଇଛନ୍ତି । କିନ୍ତୁ ଶେଷରେ ହାଲିଆ ହୋଇ ମଶିଣା ଉପରେ ପଡ଼ିଯାଇ ଅଛନ୍ତି ।

x x x x

ହଠାତ୍ ସରୋଜିନୀ ଦେବୀ ତାଙ୍କ କୋଠରୀର ଝରକା ତଳେ ଥିବା ବଗିଚାର ବୁଦା ମଧ୍ୟରୁ ଖସ୍ ଖସ୍ ଶବ୍ଦ ଶୁଣିପାରିଲେ । ଭାବିଲେ ପବନ ଗଛର ପତ୍ରରେ ଘଷି ହେବା ଫଳରେ ଏପରି ଶବ୍ଦ ହେଉଛି । ନଚେତ୍ ବୁଲା କୁକୁର ରାତିରେ ହତା ଭିତରେ ପଶି ନର୍ଦ୍ଦମାରେ ପଡ଼ିଥିବା ଅଇଁଠା ପତର ଗ୍ରୁଟୁଛି । ସରୋଜିନୀ ଦେବୀ ଉଷୁମ ତକିଆ ଉପରୁ ମୁଣ୍ଡଟେକି ହାତରେ ଭରଦେଇ ଥରି ଥରି ଉଠିବାକୁ ଚେଷ୍ଟାକଲେ । ଉଦ୍ୟାନ ମଧ୍ୟରୁ ଆସୁଥିବା ମର୍ମର ଧ୍ୱନି ମଧ୍ୟରୁ ଯେପରି ସେ ତାଙ୍କ ଜୀବନର ଅନ୍ତିମ ବାଣୀ ଶୁଣି ପାରିଲେ । ଏହା କ'ଣ ବା ହୋଇ ପାରେ ? ଅତି କଷ୍ଟରେ ସେ ଝରକା ପର୍ଯ୍ୟନ୍ତ ନିଜର ଦେହକୁ ବାହି ନେଇ ଅନ୍ଧକାର ମଧ୍ୟରେ ବାହାରକୁ ତାଙ୍କର ଦୃଷ୍ଟିଶକ୍ତିହୀନ ଚକ୍ଷୁ ଦୁଇଟିରେ ଚାହିଁ ରହିଲେ ।

ଅଳ୍ପ ସମୟ ମଧ୍ୟରେ ରାତିର ମୃଦୁମନ୍ଦ ସମୀରରେ କୌଣସି ମନୁଷ୍ୟର ଫୁସ୍‌ଫୁସ୍ ସ୍ୱର ସରୋଜିନୀ ଦେବୀଙ୍କର ନିକଟକୁ ଭାସି ଆସିଲା । ଚତୁର୍ଦ୍ଦିଗରେ ନିସ୍ତବ୍ଧତା ମଧ୍ୟରେ ସେହି ସ୍ୱର ପୃଥିବୀର ଘୂର୍ଣ୍ଣନ ସହିତ ତାଳ ପକାଇ ବାୟୁମଣ୍ଡଳରେ ଭରିଗଲା । ସରୋଜିନୀ ଦେବୀ ଜାଣି ପାରିଲେ, ତାହା କୌଣସି ପ୍ରେମିକର ଓ ପ୍ରେମିକାଙ୍କ ମଧ୍ୟରେ ପ୍ରେମ ଅଭିବ୍ୟକ୍ତି । ମନେହେଲା ଯେପରି ସେହି ସ୍ୱର ସରୋଜିନୀ ଦେବୀଙ୍କର ମସ୍ତିଷ୍କର ରନ୍ଧ୍ର ମାନଙ୍କରେ ପ୍ରତିଧ୍ୱନି ସୃଷ୍ଟି କରି ପୁଣି ଫେରି ଯାଉଥିଲା ।

ତାଙ୍କର ଝାପ୍‌ସା ଝାପ୍‌ସା ମନେ ଅଛି, ପୂର୍ବଦିନ ତାଙ୍କର ନବବିବାହିତ ଜଣେ ନାତି ତାର ସ୍ତ୍ରୀ ସହିତ ଆଶୀର୍ବାଦ ନେବାକୁ ତାଙ୍କ ପାଖକୁ ଆସିଥିଲା । ସେ ଏହି ଘଟଣା ଉପରେ ଗୁରୁତ୍ୱ ନ ଦେଇ ଇତି ମଧ୍ୟରେ ଭୁଲି ଯାଇଥିଲେ । କିନ୍ତୁ ସେତେବେଳେ ସେହି କ୍ଷୁଧିତ ପ୍ରେମିକ ପ୍ରେମିକାଙ୍କ ପ୍ରେମାଳାପ ଶୁଣି ତାହା ସରୋଜିନୀ ଦେବୀଙ୍କୁ ବିଶ୍ୱର ଅତି ଗୁରୁତ୍ୱପୂର୍ଣ୍ଣ ଘଟଣା ପରି ମନେହେଲା ।

କେଉଁ ଏକ ଅଲୌକିକ ଶକ୍ତି ଦ୍ୱାରା ସେ କିଛି ସମୟ ପରେ ସେହି ଆଳାପକୁ ସ୍ପଷ୍ଟଭାବେ ଶୁଣି ପାରିଲେ । ଯାହା ଆଗରୁ ଶୁଣାଯାଉ ନ ଥିଲା ତାହା କ୍ରମେ ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ତାଙ୍କ କର୍ଣ୍ଣକୁହରରେ ପ୍ରବେଶ କଲା । ସେ ଖୁବ କଷ୍ଟରେ ହାତ ଉପରେ ଭର ଦେଇ ଝରକା ପାଖରେ ଉତ୍କର୍ଣ୍ଣ ହୋଇ ଶୁଣିବାକୁ ଲାଗିଲେ ।

କୌଣସି ପୁରୁଷ ଉତ୍ତେଜିତ ହୋଇ କର୍କଶ ସ୍ୱରରେ କହୁଛି "ମାଧବିକା"–ତୁମେ ଆଉ କିଛିଦିନ ଅପେକ୍ଷା କର, ସେଇ ବୁଢ଼ିଟା ମରିଗଲେ ଉପରମହଲାର ସେହି ଘରଟିକୁ ଆମେ ଅଧିକାର କରି ସେଠାରେ ଖୁବ୍ ମଜା କରିବା ।"

ଏକ ଅଜ୍ଞାତ ଚମକ ସରୋଜିନୀ ଦେବୀଙ୍କର ଶରୀରରେ ଏକ ବୈଦ୍ୟୁତିକ ପ୍ରବାହ ଖେଳାଇ ଦେଇ ତାଙ୍କୁ ଉନ୍ମାଦ କରିଦେଲା । ନବେ ବର୍ଷରୁ ଦୀର୍ଘ ସମୟ ତାଙ୍କ ଉପରେ ଯେପରି ବୋଝପରି ଲଦି ହୋଇ–ଗଲା । ତାଙ୍କର ମନେହେଲା ଯେପରି ଉପବିଷ୍ଟ ବାୟୁମଣ୍ଡଳ ଘନୀଭୂତ ହୋଇ ତାଙ୍କର ଛାତି ଉପରେ ଜମାଟ ବାନ୍ଧି ରହିଛି । ସେ ଶ୍ରେଷ୍ଠ ପରି ଝରକା ପାଖରୁ ଆସି ମସିଣା ଉପରେ ପଡ଼ିଗଲେ । ତାଙ୍କର ଦୁଗ୍ଧଳା ଗାଲ ଉପରେ ଦୁଇଧାର ଲୁହ ବହି ଆସି ତାଙ୍କ ଶୁଖିଲା ଅଧରକୁ ସିକ୍ତ କରିଦେଲା । ସେ ଜୀବନରେ ପ୍ରଥମ ଥରପାଇଁ ଅନ୍ତରର ସହିତ ଇଚ୍ଛା କଲେ ଯେ ମୃତ୍ୟୁ ତାଙ୍କ ପକ୍ଷେ ଶ୍ରେୟସ୍କର ।"

---

•Illustrated Weeklyର ୧୯୬୧ ମସିହାର କ୍ଷୁଦ୍ରଗଳ୍ପ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ପାଇଥିବା ବାସନ୍ତୀ ସାନ୍ୟାଲଙ୍କର 'When Day Is Done' ଗଳ୍ପର ଅବଲମ୍ବନରେ ଲିଖିତ ।

———

# ଧନ୍ୟ ସେ ପଣ୍ଡିତ

( ମୁଲକ ରାଜ ଆନନ୍ଦଙ୍କର 'Blessed are learned' ଗଳ୍ପର ଏହା ଓଡ଼ିଆ ତର୍ଜମା । )

ଆମ ଗାଁର ଲୋକେ କହନ୍ତି, "ଧନ୍ୟ ସେ ପଣ୍ଡିତ ।"

ପ୍ଲେଟୋ, ସକ୍ରେଟିସ୍, ଆରିଷ୍ଟୋଟଲ ଜ୍ଞାନ ଆହରଣ କରି ଯେତେବେଳେ ମୁଁ ବିଲାତରୁ ଫେରିଲି ସେତେବେଳେ ଗାଁସାରା ଚହଳ ପଡ଼ିଗଲା । କଳାପାଣି ଟପିବା ଆଗରୁ ଯେଉଁମାନେ ମୋତେ ଅକାଳକୁଷ୍ମାଣ୍ଡ ଗପୁଡ଼ି ବୋଲି କହି ହେୟଜ୍ଞାନ କରୁଥିଲେ, ସେମାନେ ମଧ୍ୟ ମୋର ପ୍ରଶଂସା ଗାନ କରିବାକୁ ଲାଗିଲେ । ଖାଲି ଯେ ପ୍ରଶଂସା ଗାଇଲେ ତାହା ନୁହେଁ ମୋତେ ସମ୍ମାନ ଦେଖାଇବା ନିମିତ୍ତ ଗାଁରେ ଏକ ସଭାର ବନ୍ଦୋବସ୍ତ କଲେ ।

ସଭାରେ ମୋର ଅବସ୍ଥା ଯାହା ହେବ ତାହା ଅବଶ୍ୟ ମନେ ମନେ ମୁଁ କଳ୍ପନା କରିନେଲି । ଗାଁ ଲୋକମାନେ ମୋ ଚାରିପାଖରେ ରୁଣ୍ଡହୋଇ ମୋ ବେକରେ ଫୁଲମାଳ ପକାଇବେ । ଗାଁର ମାଷ୍ଟର ଓ ପୁରୋହିତ ବାଳକୃଷ୍ଣ ମୋତେ ପ୍ରଶଂସା କରି କପଟ ଭାଷାରେ ମୋତେ କଥା କହିବେ । ମୁଁ କିପରି ଗାଁର ଗୋଟିଏ ସଚ୍ଚା ପିଲା ଥିଲି । ସେ କିପରି ଆଗରୁ ଜାଣିଥିଲେ ଯେ ମୁଁ ଭବିଷ୍ୟତରେ ବଡ଼ ଲୋକ ହେବି— ଏହିପରି କହି ମୋର ଯଶ ବଖାଣିବେ । ଏ ସବୁ ଭାବି ଭାବି ମୋତେ ବିରକ୍ତି ଲାଗିଲା । ତଥାପି ଏତକ ସହିନେଲେ ଯେ ମୁଁ ଗାଁର ସାହୁକାର ଭଳି ଲୋକଙ୍କ ଆଗରେ ସମ୍ମାନ ପାଇ ପାରିବି । ତେଣୁ ଶେଷରେ ସଭାରେ ଯୋଗ ଦେବାକୁ ସ୍ଥିର କଲି ।

ଇଉରୋପରୁ ଫେରିବା ପରେ ମୋର ଗୋଟିଏ ହେଲେ ଧୋତି ବା କୁର୍ତ୍ତା ନ ଥିଲା । କିପରି ବା ସଭାକୁ ଯିବି ? ଆଜିଯାଏ ମଧ୍ୟ ମୁଁ ପ୍ୟାଣ୍ଟ ପିନ୍ଧିଲେ ଆମ ଗାଁ ଲୋକେ ମୋତେ ଅଲାଜୁକ ବୋଲି କହନ୍ତି । ଆଉ ପ୍ୟାଣ୍ଟ ପିନ୍ଧି ଚାଲିଲେ ରଣପା ଉପରେ ଚାଲିବା ପରି ସେମାନଙ୍କୁ ଦେଖାଯାଏ । ଯାହାହେଉ ସାହୁକାରର ପୁଅ ଚିରଂଜିଲାଲ ମୋର ପିଲାଦିନର ବନ୍ଧୁ । ସେ ମୋତେ ତନ୍ତବୁଣା ଲୁଗାଟିଏ ଧାର ଦେବାରୁ ପ୍ରଥମ ଘାଟିରୁ ଛାଡ଼ି ମିଳିଲା । ସଭା କାର୍ଯ୍ୟ ଖୁବ୍ ଅଳ୍ପ ସମୟ ମଧ୍ୟରେ ସରିଯିବ ବୋଲି କହି ମୋର ବାପା ମୋତେ ଖୁବ୍ ଆଶ୍ୱାସନା ଦେଲେ । ଦିନ ବାର ଦେଖି ସକାଳେ ଏହି ସଭା କାର୍ଯ୍ୟ ଆରମ୍ଭ ହେବ ବୋଲି ଠିକ୍ ହେଲା ।

ସେଦିନ ସକାଳେ ଜାଣିଲି ଯେ, ଏହା ଗୋଟିଏ ସଭା ନୁହେଁ; ଏହା ଏକ ପ୍ରକାର ପୂଜା । ଏ ପୂଜା ପୁଣି ମୋତେ ସମ୍ମାନ ଦେବା ପାଇଁ ହେଉ ନାହିଁ, ଗୋଟିଏ ଦୁଆଡକୁ ସମ୍ମାନ ଦେବା ପାଇଁ ହେଉଛି । ପଣ୍ଡିତ ବାଳକୃଷ୍ଣ ମୋର ମାଆକୁ ବୁଝାଇ କହିଲେ ଷଷ୍ଠିସ୍ୱ ତା'ର

ଅସ୍ତ୍ରକୁ ସମ୍ମାନ ଦିଏ, ବୈଶ୍ୟ ତାର ହିସାବ ବହିକୁ ସମ୍ମାନ ଦିଏ, ପଣ୍ଡିତ ତାର ଦୁଆତକୁ ସମ୍ମାନ ଦିଏ, ଯେତେ ଅକ୍ଷର ଶବ୍ଦ ସବୁ ଲେଖାଯାଏ ସେ ସବୁ ଏହି ଦୁଆତ ଠାରୁ ଶକ୍ତି ପାଆନ୍ତି । ମୁଁ ଶୁଣିଛି, ତୁମର ପୁଅ ଜଣେ ବଡ଼ ଲେଖକ, ସେ ଲେଖି ଲେଖି ଅନେକ କାଗଜ ଓ କାଳି ନଷ୍ଟ କରି ଅଛନ୍ତି । ତେଣୁ ଆମେ ଆଜି ଦୁଆତ ପୂଜା କରି ତାଙ୍କୁ ସମ୍ମାନ ଦେବାକୁ ଯାଉଛୁ । ସେ ଏହି ପୂଜାରେ ପ୍ରଧାନ ଅତିଥି ହେବେ ।

ମୋର ମାଆ ପଣ୍ଡିତଙ୍କର କଥାଗୁଡ଼ାକ ପିଇ ଯାଉଥିବା ପରି ମନେ ହେଉଥାଏ । ପୂଜା ପାଠରେ ତାର ଖୁବ୍ ବିଶ୍ୱାସ ଥିବାରୁ ଦୁଆତ ପୂଜା କଥାଟା ତାର ବେଶ ମନକୁ ପାଇଲା । ମୁଁ ମଧ୍ୟ ଦୀର୍ଘକାଳ ନିର୍ବାସନ ପରେ ଦେଶକୁ ଫେରି ଥିବାରୁ ମାଆକୁ ଅସନ୍ତୁଷ୍ଟ କରିବାକୁ ଋହିଁଲି ନାହିଁ । ଏହି ଦୁଆତ ପୂଜା ମଧ୍ୟ ଦେଇ ସମ୍ମାନ ଲାଭ କରିବାକୁ ମୁଁ ପ୍ରସ୍ତୁତ ହୋଇଗଲି । ଅନେକ ଦିନ ହେଲା ମୁଁ ଦୁଆତର ବ୍ୟବହାର ଛାଡ଼ି ଦେଇଥିଲି । ଚିଠିପତ୍ର ଓ ଗଳ୍ପ ଲେଖିବା ବେଳେ ମୁଁ ଫାଉଣ୍ଟେନ ବ୍ୟବହାର କରୁଥିଲି । ଅନ୍ୟାନ୍ୟ ସମସ୍ତ ବିଷୟ ମୁଁ ଟାଇପ୍ କରୁଥିଲି । ତଥାପି ମୁଁ ଏଥିରେ ପ୍ରତିବାଦ କଲି ନାହିଁ ।

ଦୁଆତ ପୂଜା ସ୍କୁଲ ଘରେ ହେବାର କଥା । ଆମ୍ଭେମାନେ ଗୋଟିଏ ଛୋଟ ଧରଣର ଶୋଭାଯାତ୍ରାରେ ସେଠାକୁ ବାହାରିଲୁ । ଗାଁର ଛୋଟ ବଡ଼ ପିଲାମାନେ ଏହି ଶୋଭାଯାତ୍ରାରେ ଆସି ଯୋଗ ଦେଲେ । ସେମାନଙ୍କ ମଧ୍ୟରୁ ଜଣେ ଜଣେ ପାଖକୁ ଆସି ବଡ଼ ବଡ଼ ଆଖି କରି ଋହୁଁ ଥାଆନ୍ତି । ଆଉ କେତେକ ଶୋଭାଯାତ୍ରା ମଧ୍ୟରେ ଥାଇ କୁସ୍ତି, କସରତ, ବାଡ଼ି ଖେଳ ପ୍ରଭୃତି ଦେଖାଉ ଥାଆନ୍ତି ।

ପୂଜା ଗୃହରେ ପହଞ୍ଚିବା ବେଳକୁ ସେଠାରେ ଘୋର ଶବଦ ନଥିଲା । ଧୂପକାଠିର ଧୂଆଁରେ ବାୟୁମଣ୍ଡଳ ଓଜନିଆ ଲାଗୁଥାଏ । ପଣ୍ଡିତ ବାଳକୃଷ୍ଣ, ତାଙ୍କର ଦୁଇଜଣ ସହକର୍ମୀ ଓ ଗ୍ରାମର ବୟୋଜ୍ୟେଷ୍ଠ ଲୋକେ କେତେଜଣ ଧୋବଲୁଗା ପିନ୍ଧି ଗୁରୁ ଗମ୍ଭୀର ହୋଇ ଭିତରେ ବସିଥାଆନ୍ତି । ସେମାନେ ମୁଣ୍ଡରେ ପଗଡ଼ି ଭିଡ଼ି ଥାଆନ୍ତି, କପାଳରେ ସିନ୍ଦୂର ମାରି ଥାଆନ୍ତି ଓ ବେକରେ ମଲ୍ଲୀ ଫୁଲର ମାଳ ପକାଇ ଥାଆନ୍ତି । ମଣ୍ଡଳ ଉପରେ କେତେଗୁଡ଼ିଏ ଦେବମୂର୍ତ୍ତି ରଙ୍ଗିନ କନାରେ ସଜ୍ଜା ହୋଇ ରହିଥାଏ ।

ଉଚ୍ଚ ବେଦିର ନିମ୍ନରେ ଥିବା ଚନ୍ଦ୍ରାତପ ପଣ୍ଡିତ ଆଉ ଗୋଟିଏ ଆସନ ଉପରେ ବସିବା ନିମିତ୍ତ ମୋତେ ଯେତେବେଳେ ସେମାନେ କହିଲେ; ଭୟ ଓ ଆତ୍ମ–ଜ୍ଞାନରେ ସେତେବେଳେ ମୁଁ ଥରିବାକୁ ଲାଗିଲି । ଉଚ୍ଚ ବେଦି ଉପରେ କଳା କାଳି ପୂର୍ଣ୍ଣ ଗୋଟିଏ ଦୁଆତ ଗୋଟିଏ ସୁନ୍ଦର କନାରେ ଗୁଡ଼ା ହୋଇ ରହିଥିଲା । ସେ କନାରେ ଅନେକ ସୂଚି କାମ ହୋଇଥିଲା । ପାଖରେ କାଠର ଗୋଟିଏ ମଞ୍ଚା ଉପରେ କେତେ–ଗୁଡ଼ିଏ ନାଲି କଲମ, ମୟୂରପକ୍ଷୀ କଲମ ରହିଥିଲା । ଆସନରେ ବସି ଋରିଆଡ଼େ ଆଖି ବୁଲାଇ ଦେଖିଲି ଯେ କେତେକ ଶସ୍ତା ଏକ୍‌ସରସାଇଜ ଖାତା, ଗୋଟିଏ ନାଲିଫିତା, କେତେକ ଆଲପିନ୍ ଦୁଇଖଣ୍ଡ ଛାପା କାଗଜ, ଆଲପିନ୍ ମାରିବାର ଗୋଟିଏ, ପ୍ୟାଡ଼, ସିଲ କରିବାର ମହମ

କାଠି କେତେଖଣ୍ଡ ଗୋଟିଏ କାଠର ଆସନ ଉପରେ ରହିଛି । ତା ପାଖରେ କେତେକ ଛୋଟ ପିତ୍ତଳ ଥାଳିରେ ପବିତ୍ର ଅରୁଆ ଚାଉଳ ଗୁଡ଼ିଏ; ସିନ୍ଦୂର ଗୁଣ୍ଡି; ଲହୁଣି ଓ ମାଟିର ଦୀପ ପ୍ରଭୃତି ସଜ୍ଜିତ ହୋଇ ରହିଛି । ମନେହେଲା ସତେ ଯେପରି ଏ ସବୁ ଦେଖି ଭଗବାନ୍ ସ୍ୱର୍ଗରୁ ମର୍ତ୍ତ୍ୟକୁ ଓହ୍ଲାଇ ଆସି ମଣିଷର ନୀଚ ଆତ୍ମାକୁ ଉପରକୁ ଉଠାଇ ନେବେ, ଅବା ଏହି ପବିତ୍ରତା ରଖିବା ଆଳରେ ପୁରୋହିତ ମଣିଷ ଆଖିରେ ଧୂଳି ପକାଇ ଦେଇ ପୂଜା ସାମଗ୍ରୀମାନ ନେଇ ଚାଲିଯିବ ।

ସେତେବେଳକୁ ଘର ଭିତରେ ଅନେକ ଲୋକ ଜମା ହୋଇ ଯାଇଥିଲେ । ଏହି ଜନତା ପାଖରେ ଏହା ମୋର ବିଜୟ ବା ଆତ୍ମ-ସମର୍ପଣ ତାହା ମୁଁ ବୁଝି ପାରିଲି ନାହିଁ । ଚାରିଆଡ଼ର ଚିହ୍ନା ଲୋକ-ମାନଙ୍କ ଆଡ଼କୁ ଆଖି ବୁଲାଉଛି । ଏପରି ସମୟରେ ଉତ୍ସବର ପବିତ୍ରତାକୁ ବଢ଼ିତ କରିବାଲାଗି ପଣ୍ଡିତ ବାଳକୃଷ୍ଣ ହଠାତ୍ ଗୋଟିଏ ପବିତ୍ର ଶ୍ଳୋକପାଠ ଆରମ୍ଭ କରିଦେଲେ । ଏହା ମୋତେ ସମ୍ମାନ ଦେଖାଇବାର ଉଦ୍ଦେଶ୍ୟରେ ନୁହେଁ, ଦୁଆଡ଼କୁ ସମ୍ମାନ ଦେଖାଇବାର ଉଦ୍ଦେଶ୍ୟରେ । ସେହି ଶ୍ଳୋକ ଉପସ୍ଥିତ ଜନତାକୁ ସ୍ତବ୍ଧ କରିଦେଲା । ପଣ୍ଡିତ ବାଳକୃଷ୍ଣ ଶ୍ଳୋକ ପାଠ କରିବା ସମୟରେ ମଝିରେ ମଝିରେ ବେଦି ଉପରେ ଅରୁଆ ଚାଉଳ ପକାଉଥାନ୍ତି । ବେଳେ ବେଳେ ଗୋଟିଏ ଦୀପ ଧରି ମୋ ଚାରିପାଖରେ ବୃତ୍ତାକାରରେ ବୁଲାଉ ଥାନ୍ତି । ଶେଷରେ ଦର୍ଶକବୃନ୍ଦ ମଧ୍ୟ ତାଙ୍କ ସହିତ ଯୋଗ ଦେଇ 'ଓମ୍ ହରି ଓମ୍' ବାରମ୍ବାର ଉଚ୍ଚାରଣ କରିବାକୁ ଲାଗିଲେ । ବଳି ମୁହଁକୁ ଯିବାପରି ମୋତେ ସେତେବେଳେ ମନେ ହେଉଥାଏ ।

ପୂଜା ସରିଆସିବା ବେଳକୁ ମୋର ମନେ ହେଲା ଯେପରି ମୋ ଆଗରେ ଦୀପଗୁଡ଼ିକର ଅସ୍ପଷ୍ଟ ଆଲୋକ ମଧ୍ୟରେ କେତେଗୁଡ଼ିଏ ମନୁଷ୍ୟର ଛାଇ ଦେଖି ପାରୁଛି । ସତେ ଯେପରି ତେତିଶ କୋଟି ଦେବତା ସ୍ୱର୍ଗରୁ ଓହ୍ଲାଇ ଆସି ସଶରୀରେ ମୋ ଆଗରେ ଛିଡ଼ାହୋଇ ଦୁଆଡ଼ର ଦାୟିତ୍ୱ ବିଷୟରେ ମୋତେ ସଚେତ କରି ଦେଉଅଛନ୍ତି ।

ଶେଷଭାଗରେ ପୁରୋହିତ ମୋ କପାଳରେ ଚନ୍ଦନ ଚିତା ମାରି ମୋ ଉପରେ ଗୋଲାପ ଫୁଲର ପାଖୁଡ଼ାମାନ ପକାଇଲେ । ଦର୍ଶକ-ମାନେ ମଧ୍ୟ ମୋ ଉପରକୁ ଏହି ପାଖୁଡ଼ାମାନ ଫିଙ୍ଗିଲେ । ତାପରେ ପୁରୋହିତ ମୋତେ ଶ୍ଳୋକରେ ହାତ ବଢ଼ାଇବାକୁ ନିର୍ଦ୍ଦେଶ ଦେଲେ । ମୁଁ ହାତ ବଢ଼ାଇବାରୁ ସେ ମୋ ହାତରେ କେତେକ ପବିତ୍ର ଜଳ ଓ ପ୍ରସାଦ ଦେଲେ । ଲୋକମାନେ ପ୍ରସାଦ ପାଇବାବେଳେ ଖରି ଗୋଳ-ମାଳ କରୁଥାଆନ୍ତି । ଶେଷରେ ଦେଖିଲି ମୋର ପିତା ମାତା ଗୋଟିଏ ଥାଳିରେ କେତେକ ଲୁଗା ଓ ଅଳଙ୍କାର ପ୍ରଭୃତି ଆଣି ପଣ୍ଡିତ ବାଳକୃଷ୍ଣଙ୍କୁ ଉପହାର ଦେଲେ ।

ସର୍ବଶେଷରେ ହୁଆଡଟି ମୋର ସମ୍ମାନରେ ଭାଗ ନେଇ ଥିବାରୁ ଆଜିଯାଏ ତାକୁ ମୁଁ ସାଇତି ରଖିଛି । କିନ୍ତୁ ମୁଁ କେବେ ଏହାକୁ ବ୍ୟବହାର କରେ ନାହିଁ । ବେଳେ ବେଳେ ମୋ ଫାଉଣ୍ଟେନ କଲମଟି ନ ପାଇଲେ ପକ୍ଷୀ କଲମଟି ଏଥିରେ ବୁଡାଇ ମୁଁ ଲେଖେ । ଆଶ୍ଚର୍ଯ୍ୟର କଥା ଯେ ଏହା କେବେ ଶୁଖେନା, କେତେ ବୁନ୍ଦା ପାଣି ପକାଇ ଦେଲେ ପୁଣି କାଳି କୁଆଡୁ ଛୁଟି ଆସେ । କାଳିର ଅସରନ୍ତି ଭଣ୍ଡାର ଏଥିରେ ଅଛି । ବୋଧହୁଏ ଦେବତାମାନେ ହୁଆଡ ପୂଜାରେ ସନ୍ତୁଷ୍ଟ ହୋଇ ଏହାକୁ ଯାଦୁକରୀ ଶକ୍ତି ଦାନ କରିଛନ୍ତି ।

— — —